# ବାଲତନ୍ତ୍ର
## ଓ
# ବାଲରକ୍ଷା ଚିକିତ୍ସା

ଇଦାନୀ

ମୂଳ ସଂସ୍କୃତ ବାଳରକ୍ଷା ଗ୍ରନ୍ଥର, ପ୍ରବୋଧକୃତ ବାଳତନ୍ତ୍ରର
ଓ ସଂସ୍କୃତ ବିଶ୍ୱନାଥ ରକ୍ଷା ଗ୍ରନ୍ଥରୁ ଶ୍ରୀ ଶ୍ୟାମସୁନ୍ଦର
ଗନ୍ତାୟତଙ୍କ ଦ୍ୱାରା ଅନୁବାଦିତ ଓ ସଂଶୋଧିତ ହୋଇ
ପ୍ରଥମବାର ନିମନ୍ତେ ପ୍ରକାଶିତ

ପ୍ରକାଶକ
ଶ୍ରୀ ଶ୍ୟାମସୁନ୍ଦର ଗନ୍ତାୟତ

'ଅଶା ପ୍ରେସ୍' ବ୍ରହ୍ମପୁର
ଶ୍ରୀ ଶଚିଭୂଷଣ ରଥଙ୍କ ଦ୍ୱାରା ମୁଦ୍ରିତ
୧୯୫୯

ମୂଲ୍ୟ ବାର ଅଣା

# ବାଳରକ୍ଷା

## ମଙ୍ଗଳାଚରଣଂ ।



ଧନ୍ୱନ୍ତରିଃ ସୁରଭିଷକ୍ ସୁଧାହସ୍ତୋ ଜିତେନ୍ଦ୍ରିୟଃ
ଆୟୁର୍ବେଦଧୁରୀଣାନାଂ ପ୍ରଥମଃ ସ୍ୟାତ୍ ଶୁଭାୟ ନଃ ॥
ଚରାଚର-ଜଗଦ୍ବସ୍ତୁ-ହର୍ତ୍ତ୍ରୀ-ରୂପେଣ ସଂସ୍ଥିତାଂ
ଅନାଦ୍ୟନ୍ତଧନାଂ ଦେବୀଂ ନମାମି ଭୁବନେଶ୍ୱରୀଂ ॥
ନାରାୟଣଂ ଗୁରୁଂ ବନ୍ଦେ ସର୍ବାମୟ-ନିବାରଣଂ
ଯତ୍ପ୍ରସାଦାତ୍ କଶ୍ଚିଦଜ୍ଞଃ କରୋତ୍ୟତୁଲ ସଂଗ୍ରହଂ ॥
ବାଲକାନାଂ ହିତାର୍ଥାୟ ବାଳତନ୍ତ୍ରାନୁସାରିଣୀ
କ୍ରିୟତେ ବାଳରକ୍ଷେୟଂ ଯଥାଶାସ୍ତ୍ରାନୁସାରତଃ ॥
ଆର୍ତ୍ତତ୍ରାଣ ରଥାଭିଧେନ ଭିଷଜାୟୁର୍ବେଦ ଶାସ୍ତ୍ରାମ୍ବୁଧେଃ
ସାରେଣାଲ୍ପ ନିରୂପଣୋପିରଚିତା ସୈଷା ଶିଶୂନାଂ କୃତେ ।

---

ଯେଉଁ ଧନ୍ୱନ୍ତରି ସୁରଗଣର ବୈଦ୍ୟ, ଯାହାଙ୍କ ହାତରେ ଅମୃତ ପାତ୍ର, ଯେ ନିଜ ଇନ୍ଦ୍ରିୟମାନଙ୍କୁ ଜିଣି ଆପଣା ଆୟତ୍ତରେ ରଖିଥାଇଅଛନ୍ତି ଓ ଆୟୁର୍ବେଦ ଜ୍ଞାନୀ ଆଚାର୍ଯ୍ୟମାନଙ୍କର ପ୍ରଥମ ଗୁରୁ ଅଟନ୍ତି, ସେହି ସ୍ୱର୍ଗଲୋକର ବୈଦ୍ୟରାଜ ଆମ୍ଭମାନଙ୍କର ମଙ୍ଗଳ ସର୍ବାଦେଶେ ହୁଅନ୍ତୁ । ସ୍ଥାବର ଜଙ୍ଗମରୂପ ସଂସାରର ମୂଳ କାରଣ ରୂପରେ ଯେ ସବୁକାଳେ ସବୁଠାରେ ରହିଅଛନ୍ତି, ଯାହାର ଆଦିଅନ୍ତ କିଛି ନାହିଁ, ସେହି ପରମାରାଧ୍ୟା ଦେବୀ ଭୁବନେଶ୍ୱରୀଙ୍କୁ ପ୍ରଣାମ କରୁଅଛୁ । ସକଳ ରୋଗର ନିବାରଣକାରୀ, ନାରାୟଣନାମକ ଗୁରୁଦେବଙ୍କୁ ମୁଁ ପ୍ରଥମେ ପ୍ରଣାମ କରୁଅଛି, ଯାହାଙ୍କ ଅନୁଗ୍ରହରୁ କିଞ୍ଚିତ ଜ୍ଞାନ ପାଇଥିବା ବ୍ୟକ୍ତି ମଧ୍ୟ ତୁଳନା ନଥିବା ମହାର୍ଯ୍ୟ ସଂଗ୍ରହ କରିପାରେ । ବାଳକମାନଙ୍କର ହିତ ନିମନ୍ତେ ବାଳତନ୍ତ୍ର ନାମକ ଗ୍ରନ୍ଥକୁ ଅନୁସରଣ କରି ଏହି ବାଳରକ୍ଷା ବିଧାନ ଲିପିବଦ୍ଧ କରାଯାଉଅଛି ଯେ ଏହା ଯଥାଶାସ୍ତ୍ର ପ୍ରକାରେ ସଂଗୃହୀତ ମ.ଣ । ଆର୍ତ୍ତତ୍ରାଣ ରଥ ନାମକ ବୈଦ୍ୟ ଇଷ୍ଟଦେବୀ ସେବା ବଳରୁ ଆୟୁର୍ବେଦ ଶାସ୍ତ୍ର-ସାଗର ମନ୍ଥଗତ ସାର ସଂଗ୍ରହ କରି ନାନାଭାବ ମନୋହର, ଅତ୍ୟନ୍ତ ସୁଖଦାୟୀ,

ନାନାଭକ୍ଷମନୋହରୈଶ୍ଚ ସତତଂ ଦେବ୍ୟସ୍ତ୍ରୈ ସଂସେବନାତ୍
ପୂର୍ଣ୍ଣାଭୀଷ୍ଟଫଳା ପ୍ରକାମଶୁଭଦା ଶୁଦ୍ଧା ଚକ୍ରଜ୍ଞୈ କୃତା ॥



## ପ୍ରଥମ ଦିବସ ବାଳ ରକ୍ଷା

ଅତଃପରଂ ପ୍ରବକ୍ଷ୍ୟାମି ବାଳରକ୍ଷାଂ ଯଥାକ୍ରମଂ ।
ପ୍ରଥମେ ଦିବସେ ନାମ୍ନୀ ନନ୍ଦନୀ ଗୃହ୍ଣତେ ଶିଶୁଂ ॥
ତଦ୍ଗୃହୀତସ୍ୟ ବାଳସ୍ୟ ଜ୍ୱରସ୍ୟାତ୍ ପ୍ରଥମଂ ତତଃ ।
ଗାତ୍ରଶୋଷସ୍ତଥା ସ୍ୱେଦୋ ନାହାରେଷ୍ୱଭିନନ୍ଦନଂ ॥
ଛର୍ଦ୍ଦିର୍ମୂର୍ଚ୍ଛା ଚ କମ୍ପଶ୍ଚ ଶୋଷୋ ହୀନସ୍ୱରସ୍ତଥା ।
ବିଧାନଂ ତସ୍ୟ ବକ୍ଷ୍ୟାମି ଯେନ ମୁଞ୍ଚତି ନନ୍ଦନୀ ॥
କୂଳଦ୍ୱୟମୃଦା କୃତ୍ୱା ପୁତ୍ତଳିକାଂ ସୁମନୋହରାଂ ।
ଶୁକ୍ଳୋଦନଂ ଶୁକ୍ଳଗନ୍ଧଂ ତଥା ଗନ୍ଧାନୁଲେପନଂ ॥
ଶୁକ୍ଳପୁଷ୍ପାଣି ପଞ୍ଚୈବ ଧ୍ୱଜାଃ ପଞ୍ଚପ୍ରଦୀପକାଃ ।
ସ୍ୱସ୍ତିକାଃ ପଞ୍ଚ ପୂର୍ବାହ୍ଣେ ପୂର୍ବସ୍ୟାଂ ଦିଶି ସଂଯୁତଃ ॥

---

ପୂର୍ଣ୍ଣାଭୀଷ୍ଟ ଫଳ ଦେବା, ଏହି ପରିଶୁଦ୍ଧ ବାଳ ରକ୍ଷା ଚନ୍ଦ୍ରଙ୍କୁ ଶିଶୁମାନଙ୍କର ହିତ ପ୍ରକାଶ କରିଅଛନ୍ତି ।

—:୦:—

ଏହି ଉପଦେଶକ୍ରମ ପୂର୍ବକ ବାଳରକ୍ଷା କୁହାଯାଉଅଛି । ପ୍ରଥମ ଦିନରେ ନନ୍ଦନୀ ନାମ ଦେବୀ ବାଳକକୁ ଆକ୍ରମଣ କରେ । ଏହି ବାଳକର ପ୍ରଥମେ ଜ୍ୱର ହୁଏ, ଦେହ ଶୁଖିଯାଏ ଝାଳ ଅସେ, କ୍ଷୀର ପିଏ ନାହିଁ । ଦୁଧ ବାନ୍ତି କରେ, ମୋହ ପାଏ, କମ୍ପ ହୁଏ, ମୁହଁ ଶୁଖେ, ସ୍ୱର କ୍ଷୀଣ ହୁଏ । ଏହି ଲକ୍ଷଣ ସବୁ ନନ୍ଦନୀ ନାମ ଦେବୀ ଗ୍ରହଣ କରିଥିବା ପିଲାଠାରେ ଦେଖାଯାଏ । ଏବେ ଯେଉଁ ବିଧାନରେ ଛାଡ଼େ ତାହା କୁହାଯାଉଅଛି । ନଈର ଦୁଇ ତଟରୁ ମାଟି ଆଣି ଗୋଟିଏ କୁଣ୍ଢେଇ ଗଢ଼ି ଏକ ପାତ୍ରରେ ରଖିବ । ତାହାର ଆଗରେ ଅନ୍ୟ ପାତ୍ରରେ ଧଳାଭାତ, ରଖିବ । ଧଳାଚନ୍ଦନ ଏବଂ କର୍ପୂର ଲଗାଇବ, ପାଞ୍ଚପ୍ରକାର ଶୁକ୍ଳ ଫୁଲ, ପାଞ୍ଚଗୋଟି ଧ୍ୱଜା, ପାଞ୍ଚଗୋଟି ଦୀପ ରଖିବ । ଏହାସବୁ କରି ମଧ୍ୟାହ୍ନ ବେଳେ ପୂର୍ବ ଦିଗରେ ନେଇ ବଳିଦେବ । ଧୂପ ପାଇଁ ଶୁକ୍ଳ

ଚଳଂ ଦଦ୍ୟାଦଥୋ ଗଜସର୍ପପୋଶୀରମେବ ଚ ।
ଶିବ ନିର୍ମାଲ୍ୟ ମାର୍ଜାର ନୃକେଶା ନିମ୍ବପତ୍ରକଂ ॥
ଗବ୍ୟଂ ଘୃତଂ ତତୋ ଽନେନ ଧୂପଯେ ଚ୍ଚୈବ ବାଳକଂ ।
ଏବଂ ଦିନତ୍ରୟଂ କୃତ୍ୱା ଚତୁର୍ଥେ ମନ୍ତ୍ରବାରଣା
ସ୍ନାପଯେ ଦ୍ବାଳକଂ ପଶ୍ଚା ଦ୍ବ୍ରାହ୍ମଣଂ ଚାପି ଭିକ୍ଷୁକଂ ।
କ୍ଷୀରେଣ ଭୋଜୟେ ଦ୍ଦେବ ସୁସ୍ଥୋ ଭବତି ବାଳକଃ ॥
ସ୍ନାନେ ପୂଜନେ ଚୈବ ବଳଦାନେ ଚ ମାର୍ଜନେ ।
ବକ୍ଷ୍ୟମାଣେନ ମନ୍ତ୍ରେଣ କର୍ତ୍ତବ୍ୟୋ ବିଧିରୁତ୍ତମଃ ॥
ମନ୍ତ୍ରଃ— ପ୍ରଣବୋ ଭୁବନେଶାନୀ ଖଂଖଃ ସ୍ୱାହା ଷଡ଼କ୍ଷରଃ ।
ଏବଂ କୃତେନ ବାଳସ୍ୟ ସୁଖଂ ଭବତି ନାନ୍ୟଥା ॥

**✽ ଦ୍ୱିତୀୟ ଦିବସ ବାଳ ରକ୍ଷା ✽**

ଦ୍ୱିତୀୟେ ଦିବସେ ବାଳଂ ଗୃହ୍ଣାତି ଚ ସୁନନ୍ଦନା ।
ତତୋ ଭବେ ଜ୍ଜ୍ୱରଃ ପୂର୍ବଂ ସଙ୍କୋଚୌ ହସ୍ତପାଦୟୋଃ ॥
ଦନ୍ତାନ୍ ଖାଦତି ଶ୍ୱସିତି ନିମୀଳଯତେ ଚକ୍ଷୁଷୀ ।
ଆହାରଂ ଚ ନ ଗୃହ୍ଣାତି ଦିବାରାତ୍ରୌ ଚ ରୋଦିତି ॥

---

ଗୋରକ୍ଷ, ଉଶୀର, ଅରଖଫୁଲ, ବିଲ୍ୱପତ୍ରଗୋମ ଓ ମନୁଷ୍ୟର ମସ୍ତକ ବାଳ, ନିମ୍ବପତ୍ର, ଗାଈ-ଘିଅ ଏହା ସବୁ ଏକତ୍ର କରି ପିଲାକୁ ଧୂପ ଦେବ । ଏପରି ତିନିଦିନ କରି ପୁଣି ଚତୁର୍ଥ ଦିନରେ ମନ୍ତ୍ରିତ ଜଳରେ ପିଲାକୁ ସ୍ନାନ କରାଇବ । ପରେ ବ୍ରାହ୍ମଣ ବା ଭିକ୍ଷୁକକୁ କ୍ଷୀର ଭୋଜନ ଦେବ । ଏପରି କଲେ ସେହି ପିଲା ଭଲ ହେବ । ସ୍ନାନ, ପୂଜା, ବଳଦାନ, ମାର୍ଜନ, ଏସବୁ କୁହାଯିବା ମନ୍ତ୍ରରେ କରିବ । ଓଁ ହ୍ରୀଂ ଖଂଖଃସ୍ୱାହା । ଏହି ଛ ଅକ୍ଷର ମନ୍ତ୍ର ଜପିବାକୁ ହେବ । ଏହିମନ୍ତ୍ର ବୋଲି ବଳିଦେବ, ଏହିପରି ସ୍ନାନ କରାଇବ ।

ଦ୍ୱିତୀୟ ଦିନରେ ସୁନନ୍ଦା ନାମ ଦେବୀ ବାଳକକୁ ଗ୍ରହଣ କରେ । ଏହାର ଲକ୍ଷଣ କୁହାଯାଉଅଛି । ପ୍ରଥମେ ଜ୍ୱର ଉତ୍ପନ୍ନ ହେବ, ହାତ ଗୋଡ଼ ସାଙ୍କୁଡ଼ି ଯାଏ, ଦାନ୍ତ ଚାପି ହୋଇଯାଏ, ନିଶ୍ୱାସ ଅଧିକ ହେବ, ଆଖି ବୁଜେ, ସ୍ତନପାନ କରେ ନାହିଁ,

ଅକ୍ଷିରୋଗଂ ଛର୍ଦ୍ଦନଂ ଚ ଭବେଦ୍ଭୀତଃ ପୁନଃ ପୁନଃ ।
କୃଶତ୍ୱଂ ଜାୟତେ ଽତ୍ୟନ୍ତଂ ଚିହ୍ନମେତତ୍ପ୍ରକୀର୍ତ୍ତିତଂ ॥
ତଣ୍ଡୁଳ ପ୍ରସ୍ଥ ପିଷ୍ଟେନ ଜନନୀଂସ୍ଥାପ୍ୟ ପୁତ୍ତ୍ରିକାଂ ।
ତ୍ରୟୋଦଶ ଧ୍ୱଜା ଦୀପାଃ ସ୍ୱସ୍ତିକା ଧବଳୋଦନଂ ।
ସିଦ୍ଧାର୍ଥଂ ସର୍ଷପଂ ମାଷଂ ପକ୍ୱାଦିକଂ ଜଳଂ ତଥା ॥
ମାଂସଂ ଚୈତାନ୍ ସଂହୃତ୍ୟ ବଳିଂ ବାଳ ସୁଖାପ୍ତୟେ ।
ପଶ୍ଚିମାୟାଂ ଚ ସନ୍ଧ୍ୟାୟା ମେବଂ ଦଦ୍ୟାଦ୍ଦିନତ୍ରୟଂ ।
ଧୂପଂ ମନ୍ତ୍ରଜପଂ ସ୍ନାନଂ କୁର୍ଯ୍ୟା ପୂର୍ବକ୍ରମେଣ ବୈ ॥

* ତୃତୀୟ ଦିବସ ବାଳ ରକ୍ଷା *

ତୃତୀୟେ ଽହ୍ନି ଚ ଘଣ୍ଟାଳୀ ଗୃହ୍ଣାତି ବାଳକଂ ଗ୍ରହୀ ।
ତସ୍ୟ ସ୍ୟାତ୍କମ୍ପ ମୁଦ୍ବେଗଂ କାସଂ ଶ୍ୱାସଂ ଚ ରୋଦନଂ ॥
ଗଜଦନ୍ତଂ ଚ ଗୋଦନ୍ତଂ ତଥାଶ୍ମନଂସ୍ତୁ କୋଶକଂ ।
ଅର୍କକ୍ଷୀରେଣ ସଂପିଷ୍ୟ ତତୋ ବାଳଂ ପ୍ରଲେପୟେତ୍ ॥

---

ଦିନ ରାତ କାନ୍ଦେ, ଆଖି ରୋଗହୁଏ, ଓ କଷ୍ଟରେ ଦୁଧ ବାନ୍ତି କରେ, ଭୟକେ, ଶରୀର ଦୁର୍ବଳ ହୁଏ । ଏହି ଲକ୍ଷଣରେ ନନ୍ଦା ଦେବୀର ଦୋଷ ହୋଇଥାଏ । ଏହାର ଶାନ୍ତି ଉପାୟ କୁହା ଯାଉଅଛି । ସେରେ ଚାଉଳ ବାଟି ଦେବୀର ମୂର୍ତ୍ତି ଗଢ଼ି ଏକ ପାତ୍ରରେ ରଖିବ । ତାଙ୍କ ଅଙ୍ଗରେ ତେର ଗୋଟି ଧ୍ୱଜା, ତେରଗୋଟି ଦୀପ, ତେରଟି ପାତ୍ରରେ ଶୁକ୍ଳଭାତ ରଖିବ ଏବଂ ସିଦ୍ଧାର୍ଥ ସୋରିଷ, ବିରି, ଓ ରାଶି, ମାଂସ ପକାଇ ଆଗ ପାତ୍ରରେ ରଖିବ । ଏକୋଇଶି ଥର ମନ୍ତ୍ର ପଢ଼ି ସାତ ଥର ବାଳକ ଉପରେ ନେଉଁଛାଇଁ ବାହାର ସନ୍ଧ୍ୟା ସମୟରେ ଘରର ପଶ୍ଚିମ ଦିଗକୁ ଅଣି ଥୋଇବ । ଏହିପରି ତିନ ଦିନ କଲେ ବାଳକର ରୋଗ ଦୂର ହୁଏ । ଆଉ ଧୂପ, ମନ୍ତ୍ର, ସ୍ନାନ, ସବୁ ପ୍ରଥମ ଦିନ ବିଧି କ୍ରମରେ କରିବ ।

ତୃତୀୟ ଦିନରେ ଘଣ୍ଟାଳୀ ନାମ ଦେବୀ ବାଳକକୁ ଗ୍ରହଣକରନ୍ତି । ଏହାର ଲକ୍ଷଣ କୁହାଯାଉଛି । ପ୍ରଥମେ ବାଳକର ଶରୀର କମ୍ପହୁଏ, ଚମକିଉଠେ, କାଶ, ଶ୍ୱାସ ହୁଏ, ବହୁତ କାନ୍ଦେ । ଏହି ଲକ୍ଷଣ ଦେଖି ଘଣ୍ଟାଳୀ ନାମ ଦେବୀର ଦୋଷ ଜଣାଯାଏ ।

ଧୂପସ୍ତେ ନିମ୍ବପତ୍ରାଣି ନଖ ସର୍ଷପଗୁଗ୍ଗୁଳଃ ।
ଲେପିତୋ ଧୂପିତୋ ବାଳଃ ସୁଖମାପ୍ନୋତି ନିଶ୍ଚିତଂ ॥
ପ୍ରଥମୋକ୍ତ ପ୍ରକାରେଣ ଶେଷମନ୍ୟଚ୍ଚ କାରୟେତ୍ ।
ଏବଂ କୃତେଭ୍ୟୁ ସା ଦେବୀ ବାଳକଂ ମୁଞ୍ଚତି ଧ୍ରୁବଂ ॥

* ଚତୁର୍ଥ ଦିବସ ବାଳ ରକ୍ଷା *

ଚତୁର୍ଥେହ୍ନି ଚ ସଂପ୍ରାପ୍ତେ କଣ୍ଟକୋଳୀ ଗ୍ରହେ ଶିଶୁଂ ।
ତଚ୍ଚେଷ୍ଟାରୁଚତୃଦ୍ଦେଶ୍ୟ ଫେଣୋଦ୍ଗାରୌ ଦଗୀକ୍ଷଣଂ ॥
ଗଜଦନ୍ତାହି ନିର୍ମୋକ ଗୁଗ୍ଗୁଳାଷ୍ଟ ପ୍ରଲେପୟେତ୍ ।
ଧୂପୟେତ୍ସର୍ଷପୋଷ୍ଟ କେଶୌ ମୁଞ୍ଚତି ସା ଗ୍ରହୀ ॥
ମନ୍ତ୍ର ସ୍ନାନାଦିକଂ ଚୈବଂ ବଳିଦାନା ଦିକଂ ତଥା ।
ପ୍ରଥମୋକ୍ତ ପ୍ରକାରେଣ ଶେଷମନ୍ୟ ସମାପୟେତ୍ ॥

---

ଏହାର ଶାନ୍ତି ଉପାୟ କୁହାଯାଉ ଅଛି । ହାତୀ ଦାନ୍ତ, ଗୋରୁ ଦାନ୍ତ, କୁମ୍ଭାରଘର ମାଟି ଏହା ସବୁ ଛେଳି ଦୁଧରେ ବାଟି ବାଳକର ଶରୀରରେ ବୋଳିଦେବ । ନିମ୍ବପତ୍ର, ନଖ, ଶୋରିଷ, ଗୁଗ୍ଗୁଳି, ଏହାର ଧୂପ ଦେବ । ଏପରି କଲେ ବାଳକ ନିଶ୍ଚୟ ଆରୋଗ୍ୟ ହୋଏ । ପ୍ରଥମ ଦିନ ସରିକେ ବଳିଦାନ, ସ୍ନାନ, ଜପ ପ୍ରଭୃତି କରିବ । ଏପରି କଲେ ଘଣ୍ଟାଳୀ ଦେବୀ ବାଳକକୁ ଛାଡ଼ି ଯାଏ ।

ଚତୁର୍ଥ ଦିନ କଣ୍ଟକୋଳୀ ନାମ ଦେବୀ ବାଳକକୁ ଗ୍ରହଣ କରେ । ଏହାର ଲକ୍ଷଣ କୁହାଯାଉ ଅଛି । ସ୍ତନପାନରେ ଅରୁଚି ହୁଏ, ଚମକେ, ମୁହଁ ଫୁଲି ଯାଏ, ବାନ୍ତି ଓଷାର ହୁଏ, କାନ୍ଦେ, ଶୂନ୍ୟ ଆଡ଼େ ଆଖିବୁଲାଇ ରହେ । ଏହାର ଶାନ୍ତ୍ୟୁପାୟ କୁହାଯାଉଛି । ହାତୀର ଦାନ୍ତ, ସାପ କାତି, ଗୁଗ, ଏହି ତିନି ପଦାର୍ଥ ପାଣିରେ ବାଟି ପିଲାର ଦେହରେ ବୋଳିବ । ଶୋରିଷ, ନିମ୍ବପତ୍ର, ମନୁଷ୍ୟ ମସ୍ତକ ବାଳ, ଏହା ସବୁ ଏକତ୍ର କରି ଧୂପ ଦେଲେ କଣ୍ଟକୋଳୀ ଦେବୀର ଦୋଷ ଦୂର ହୁଏ—ବାଳକ ସୁସ୍ଥ ହୁଏ । ମନ୍ତ୍ର ଜପ, ସ୍ନାନ, ବଳିଦାନ ପ୍ରଭୃତି ପ୍ରଥମ ଦିନ ବିଧି ପ୍ରକାରେ କରିବ ।

❋ ପଞ୍ଚମ ଦିବସ ବାଳ ରକ୍ଷା ❋

ପଞ୍ଚମେ ଦିନ୍ୟହଙ୍କାସ୍ୱ ଗ୍ରହୀ ଗୃହ୍ଣାତି ବାଳକଂ ।
ତଚ୍ଚେଷ୍ଟା ଜୃମ୍ଭଣଂ ଶ୍ୱାସ ମୁଷ୍ଟିବନ୍ଧୋର୍ଦ୍ଧ୍ୱବୀକ୍ଷଣଂ ॥
ଶିଳା ତାଳ ବଚା ଲୋଧ୍ର ମେଷଶୃଙ୍ଗୈଃ ପ୍ରଲେପୟେତ୍ ।
ଲଶୁନଂ ନିମ୍ବପତ୍ରାଜ୍ୟ ସିଦ୍ଧାର୍ଥୈର୍ଧୂପୟେତ୍ ତତଃ ।
ଏବଂ ମୁଞ୍ଚତି ସା ବାଳଂ ବଳିଦାନାଦ୍ ବିଶେଷତଃ ।
ଅବଶିଷ୍ଟଂ ତୁ ଯତ୍ସର୍ବଂ ପୂର୍ବବତ୍ ପ୍ରକାରୟେତ୍ ।

❋ ଷଷ୍ଠ ଦିବସ ବାଳ ରକ୍ଷା ❋

ଷଷ୍ଠେ ଚ ଦିବସେ ନାମ୍ନୀ ଖଟ୍ୱାଙ୍ଗୀ କମତେ ଶିଶୁଂ ।
ତଚ୍ଚେଷ୍ଟା ଗାତ୍ର ବିକ୍ଷେପୋ ହାସ୍ୟ ରୋଦନ ମୋହନଂ ॥

---

ପଞ୍ଚମ ଦିନ ଅହଙ୍କାସ୍ୱ ନାମ ଦେବୀ ବାଳକକୁ ଗ୍ରହଣ କରେ । ଏହାର ଲକ୍ଷଣ କୁହାଯାଉଛି । ହାଇ ଆସେ, ନିଶ୍ୱାସ ବଡ଼ ହୁଏ, ହାତ ମୁଠା ମୁଠା କରି ରଖେ, ଉପରକୁ ଚାହେଁ, ଏହି ସବୁ ଲକ୍ଷଣ ଦେଖି ଅହଙ୍କାସ୍ୱ ଦେବୀର ଦୋଷ ବୋଲି ଜାଣିବ । ଏବେ ଏହାର ଉପାୟ କୁହାଯାଉଛି । ମନଶିଳା, ହରିତାଳ, ବଚ, ଲୋଧ, ମେଣ୍ଢାଶିଙ୍ଗି, ଏହା ସବୁ ସମାନ ଭାଗରେ ଅଣି ପାଣିରେ ବାଟି ବାଳକର ଦେହରେ ବୋଳି ଦେବ । ରଶୁଣ, ନିମ୍ବପତ୍ର, ଗାଈ-ଘିଅ, ଧଳା ସୋରିଷ, ଏହା ସବୁ ଏକତ୍ର ଧୂପ ଦେବ । ଏପରି କଲେ ଅହଙ୍କାସ୍ୱ ଦେବୀ ବାଳକଠାରୁ ଛାଡ଼ି ଯାଏ । ଏଥିସମ୍ବନ୍ଧେ ବାକିଥିବା ବଳିଦାନ, ସ୍ନାନ, ମନ୍ତ୍ର ଜପ, ଇତ୍ୟାଦି ପ୍ରଥମ ଦିନ ବିଧି ପ୍ରକାରେ କଲେ ବାଳକ ଆରୋଗ୍ୟ ପାଏ ।

ଷଷ୍ଠ ଦିନରେ ଖଟ୍ୱାଙ୍ଗୀ ନାମ ଦେବୀ ବାଳକକୁ ଗ୍ରହଣ କରେ । ଏହାର ଲକ୍ଷଣ କୁହାଯାଉଛି । ପ୍ରଥମେ ବାଳକ ହାତ ଗୋଡ଼ ଝାଡ଼େ, ହସେ, କେବେ କେବେ କାନ୍ଦେ, ମୋହ ହୁଏ ଅର୍ଥାତ୍ ଅଜ୍ଞାନ ରହେ, ସ୍ତନପାନ କରେ ନାହିଁ । ଏହି ଲକ୍ଷଣ ସବୁ ଖଟ୍ୱାଙ୍ଗୀ ଦେବୀର ଦୋଷ ବୋଲିପାଏ । ଏହାର ଉପାୟ କୁହାଯାଉଅଛି । କୁଡ଼, ଗୁଗ୍ଗୁଳ, ରାଇ, ହାତୀ ଦାନ୍ତ, ଗାଈ ଘିଅ, ଏହାସବୁ ଏକତ୍ର କରି ଧୂପ ଦେବ, ଏହି ସବୁ ପଦାର୍ଥ ପାଣିରେ ବାଟି ବାଳକର ଦେହରେ ଲେପନ କରିବ । ବଳିଦାନ,

କୁଷ୍ଠ ଗୁଗ୍ଗୁଲୁ ସିଦ୍ଧାର୍ଥ ଗଜଦନ୍ତୈ ର୍ଘୃତାନ୍ବିତୈଃ ।
ଧୂପୟେ ଲ୍ଲେପୟେ ଚ୍ଚାପି ତତୋ ମୁଞ୍ଚତି ସାଗ୍ରହା ॥

✽ ସପ୍ତମ ଦିବସ ବାଳ ରକ୍ଷା ✽

ସପ୍ତମେ ଦିବସେ ନାମ୍ନୀ ହିଂସିକା ଜମତେ ଶିଶୁଂ ।
ତତଶ୍ଚେଷ୍ଟା ଜୃମ୍ଭଣଂ ଶ୍ବାସୋ ମୁଷ୍ଟିବନ୍ଧଂ ତଥୈବ ଚ ॥
ମେଷଶୃଙ୍ଗୀ ବଚ୍ଚ ଲୋଧ୍ରଂ ହରିତାଳଂ ମନଃଶିଳା ।
ଏତତ୍ତୁ ଗୂଟରଂ ପିଷ୍ଟ୍ବା ତତୋ ବାଳଂ ପ୍ରଲେପୟେତ୍ ॥
ବଳିଂ ଦଦ୍ୟାତ୍ତୁ ପ୍ରାଗ୍ରୀତ୍ୟା ତତୋ ମୁଞ୍ଚତି ସା ଗ୍ରହୀ ।
ମନ୍ତ୍ର ସ୍ନାନାଦିକଂ ସର୍ବଂ ପ୍ରଥମୋକ୍ତ କ୍ରମେଣ ତୁ ॥

✽ ଅଷ୍ଟମ ଦିବସ ବାଳ ରକ୍ଷା ✽

ଅଷ୍ଟମେ ଦିବସେ ନାମ୍ନୀ ଭୀଷଣୀ ଜମତେ ଶିଶୁଂ ।
କାସତେ ଶ୍ବସତେ ଚୈବ ଗାତ୍ରଂ ସଂକୋଚତେ ଭୃଶଂ ॥
ଅପାମାର୍ଗ ମୂଳୀରଂ ଚ ପିପ୍ପଳୀ ଚନ୍ଦକଂ ତଥା ।
ଅଜା ମୂତ୍ରେଣ ସଂପେଷ୍ୟ ତତୋ ବାଳଂ ପ୍ରଲେପୟେତ୍ ॥

---

ମନ୍ତ୍ର, ଜପ, ସ୍ନାନ ଆଦି ପ୍ରଥମ ଦିନ ବିଧିପ୍ରକାରେ କଲେ ବାଳକ ସୁସ୍ଥ ହୁଏ—ଖଟ୍ବାଙ୍ଗୀ ଦେବୀର ଦୋଷ ହରଣ ହୁଏ ।

ସପ୍ତମ ଦିନ ହିଂସିକା ନାମ ଦେବୀ ବାଳକକୁ ଗ୍ରହଣ କରେ । ଏହାର ଲକ୍ଷଣ କୁହାଯାଉଅଛି । ହାଇ ଆସେ, ଶ୍ବାସ ହୁଏ, ହାତ ମୁଠା ମୁଠା କରେ, ସ୍ତନ ଗ୍ରହେ ନାହିଁ । ଏହାର ଉପାୟ କୁହାଯାଉଛି । ମେଣ୍ଢାସିଙ୍ଗୀ, ବଚ, ଲୋଧ, ହରିତାଳ, ମନଃଶିଳା ଏହା ସବୁ ସମାନ ଭାଗରେ ଆଣି ପାଣିରେ ବାଟି ବାଳକର ଶରୀରରେ ଲେପନ କରିବ । ଆଉରି ବଳିଦାନ, ମନ୍ତ୍ର, ଜପ, ସ୍ନାନାଦି ସକଳ ପ୍ରଥମ ଦିନ ବିଧି ପ୍ରକାରେ କଲେ ବାଳକ ସୁଖୀ ହୁଏ । ହିଂସିକା ଦେବୀର ଦୋଷ ଖଣ୍ଡନ ହୁଏ ।

ଅଷ୍ଟମ ଦିନରେ ଭୀଷଣୀ ନାମ ଦେବୀ ବାଳକକୁ ଗ୍ରହଣ କରେ । ଏହାର ଲକ୍ଷଣ କୁହାଯାଉଅଛି । କାସ, ଶ୍ବାସ ହୁଏ, ଅଙ୍ଗ ସଙ୍କୋଚ କରେ, ଜ୍ବର ହୁଏ, ଆଖି ଫିଟେ ନାହିଁ । ଏହି ଲକ୍ଷଣରୁ ଭୀଷଣୀ ଦେବୀର ଦୋଷ ବୋଲି ଜାଣିବ । ଏବେ ଏହାର

ଗୋଶୃଙ୍ଗ ନଖ କେଶୈସ୍ତୁ ଧୂପୟେଦ୍‌ବାଳକଂ ତତଃ ।
ମନ୍ତ୍ର ସ୍ନାନାଦିକଂ ସର୍ବଂ ପ୍ରଥମୋକ୍ତ କ୍ରମେଣ ବୈ ॥

✻ ନବମ ଦିବସ ବାଳ ରକ୍ଷା ✻

ନବମେ ଦିବସେ ବାଳଂ ମେଷା ଗୃହ୍ଣାତି ବୈ ଶିଶୁଂ ।
ତଚ୍ଚେଷ୍ଟା ଜାୟତୋଦ୍ୱେଗଃ ସ୍ୱମୁଷ୍ଟି ସ୍ୱସ୍ତ ଖାଦନଂ ॥
ବଚ୍ଚ ଚନ୍ଦନ କୁଷ୍ଠୋଗ୍ରା ସର୍ଷପା ସ୍ରୁବ ଲେପୟେତ୍ତୁ ।
ନଖ ବାନର ଲୋମାଭ୍ୟାଂ ଧୂପ ସନ୍ତୁଷ୍ଟ ଗ୍ରହୀ ॥

✻ ଦଶମ ଦିବସ ବାଳ ରକ୍ଷା ✻

ଦଶମେ ଦିବସେ ନାମ୍ନୀ ରେଦନା ଭ୍ରମତେ ଶିଶୁଂ ।
ତଚ୍ଚେଷ୍ଟା କାହନଂ ଚୈବ ରେଦନଂ ମୁଷ୍ଟିବନ୍ଧନଂ ॥
କୁଷ୍ଠୋଗ୍ରା ସର୍ଜ୍ଜ ସିଦ୍ଧାର୍ଥୈ ର୍ନିମ୍ବୈର୍ମେନ ଧୂପୟେତ୍ତୁ ।
ମଦ୍ୟ ମାଂସ ସୁରା ଯୁକ୍ତଂ ନିଶାୟାଂ ବଳିମାହରେତ୍ତୁ ॥

---

ଶାନ୍ତି ଉପାୟ କୁହାଯାଉଛି । ଅପାମାର୍ଗ, ବେଣାଚେର, ପିତ୍ତଳୀ, ଚିତାଦାରୁ ଏହା ସବୁ ଛେଚି ମୂତରେ ବାଟି ବାଳକର ଦେହରେ ବୋଳିବ । ଗାଈ ଶିଙ୍ଗ, ନଖ, ବାଳ, ଏହା ସବୁ ଧୂପ ଦେବ । ମନ୍ତ୍ର, ଜପ, ସ୍ନାନାଦି ସବୁ ପ୍ରଥମ ଦିନ ବିଧି ପ୍ରକାରେ କଲେ ପିଲାଟି ଭଲହୁଏ— ଖଣ୍ଡଣୀ ଦେବୀର ଦୋଷ ଛାଡ଼ିଯାଏ ।

ନବମ ଦିନରେ ମେଷା ନାମ ଦେବୀ ବାଳକକୁ ଗ୍ରହଣ କରେ । ଏହାର ଲକ୍ଷଣ କୁହାଯାଉଛି । ପ୍ରଥମରେ ବାଳକ ଚମକଉଠେ, ଛନିଆଁ ହୁଏ, ନିଜ ହାତ ମୁଠା ଗୁଡ଼ି ଗୁଡ଼ି ଚୋବାଏ । ଏହି ଲକ୍ଷଣରୁ ମେଷା ନାମ ଦେବୀର ଦୋଷ ବୋଲି ଜଣାଯାଏ । ଏହାର ଶାନ୍ତି ଉପାୟ କୁହାଯାଉଛି । ବଚ, ଚନ୍ଦନ, କୁଡ଼, ଘିଅ, ଏହା ସବୁ ପାଣିରେ ବାଟି ପିଲାର ଦେହରେ ବୋଳିବ । ନଖ, ମାଙ୍କଡ଼ ରୋମ, ମିଶାଇ ଧୂପ ଦେବ । ବଳିଦାନାଦି ସବୁକର୍ମ ପ୍ରଥମ ଦିନ ବିଧିପ୍ରକାରେ କରିବ । ଏପରି କଲେ ପିଲା ଆରୋଗ୍ୟ ଲାଭକରେ— ମେଷା ଦେବୀର ଦୋଷ ଦୂରହୁଏ ।

ଦଶମ ଦିନରେ ବେଦନା ନାମ ଦେବୀ ବାଳକକୁ ଗ୍ରହଣକରେ, ଏହାର ଲକ୍ଷଣ କୁହାଯାଉଛି । କାଶ ହୁଏ, ରୋଦନ କରେ, ହାତ ମୁଠା ମୁଠା କରେ, ସ୍ତନପାନ

ଅପାମାର୍ଗାଙ୍କ୍ରୁ ଉଶୀର ଚନ୍ଦନ କ୍ୱାଥବାରିଣା
ମନ୍ତ୍ର ମଷ୍ଟଶତଂ ଜପ୍ତ୍ୱା ତ୍ରିସନ୍ଧ୍ୟଂ ପରି ଷିଞ୍ଚୟେତ୍ ॥
ଏବଂ କୃତେ ତୁ ସା ଦେବୀ ବାଳଂ ମୁଞ୍ଚତି ବେଦନା
ପ୍ରଥମାକ୍ତ ପ୍ରକାରେଣ ଶେଷ ମନ୍ୟଚ୍ଚ କାରୟେତ୍ ।

✱ ଅଥ ପ୍ରଥମ ମାସ ବାଳ ରକ୍ଷା ✱

ପ୍ରଥ ମାସ ଗୃହୀତସ୍ୟ ବାଳକସ୍ୟ ଶମୁକ୍ତୟେ ।
ବଳିଂ ବକ୍ଷ୍ୟାମି ସୁଖଦଂ ସର୍ବତନ୍ତ୍ରେଷୁ ଗୋପିତଂ ।
ପ୍ରଥମେ ମାସି ଗୃହ୍ଣାତି କୁମାରୀ ନାମ ଯୋଗିନୀ ।
ଉଦ୍‌ବେଗ ଜ୍ୱର ଶୋଷାଦ୍ୟୈ ଚେଷ୍ଟିତଂ ତନ୍ନ ଜାୟତେ ।
ନୈଋତ୍ୟାଂ ଦଶ ନାଶ୍ରିତ୍ୟ ସନ୍ଧ୍ୟାକାଳେ ବଳିଂ ହରେତ୍ ।
ମେଘ ତତ୍ର ଦ୍ରବ୍ୟୁ ଲୁଷ୍ଟ୍ର ମୁଦା ଦେବୀ ସ୍ୱରୂପକଂ ।

---

କରେ ନାହିଁ । ଏହି ଲକ୍ଷଣରୁ ବେଦନା ନାମ ଦେବୀର ଦୋଷ ବୋଲିଯାଏ । ଏବେ ଏହାର ଶାନ୍ତି ଉପାୟ କୁହାଯାଉଛି । କୁଷ୍ଠ, ବଚ, ଗଲ, ଶୁକ୍ଳ ଶୋରିଷ, ଝୁଣା । ଏହିସବୁ ଏକତ୍ର କରି ପାଣିରେ ବାଟି ପିଲା ଦେହରେ ବୋଳିବ । [illegible] ଧୂପ ଦେବ । ପ୍ରଥମ ଦିନ ବିଧି ପ୍ରକାରେ ସନ୍ଧ୍ୟା ସମୟରେ ବଳିଦେବ । ମାଛ, ମାଂସ, ମଦ ଏହି ବଳିରେ ମିଶାଇବ । ଅପାମାର୍ଗର ଗଜା ଉଶୀର, ରକ୍ତଚନ୍ଦନ, ଏହି ଦ୍ରବ୍ୟର କ୍ୱାଥ କରି ଅଷ୍ଟୋତ୍ତରଶତ ବାର ମନ୍ତ୍ରିତ କରି ତ୍ରିସନ୍ଧ୍ୟାରେ ପିଲାକୁ ସ୍ନାନ କରାଇବ । ଆଉରି ମନ୍ତ୍ର ଜପ ଇତ୍ୟାଦି ସବୁ କର୍ମ ପ୍ରଥମ ଦିନ ବିଧିରେ କରିବ । ଏପରି କଲେ ବେଦନା ନାମ ଦେବୀର ଦୋଷ ନାଶ ଯାଏ ।

ଦିନ ରକ୍ଷା ବିଧି କହିବା ଉତ୍ତାରୁ ମାସ ଗୃହୀତ ଗ୍ରହରକ୍ଷା ବିଧି କୁହାଯାଉଛି । ପ୍ରଥମ ମାସରେ କୁମାରୀ ନାମ ଦେବୀ ବାଳକକୁ ଗ୍ରହଣ କରେ । ଏହାର ଲକ୍ଷଣ କୁହାଯାଉଛି । ପ୍ରଥମେ ବାଳକ ଉଦ୍‌ବେଗ ହୁଏ, ଜ୍ୱର ହୁଏ, ଦେହ ଶୁଖିଯାଏ, କାନ୍ଦେ, ସ୍ତନପାନ କରେ ନାହିଁ । ଏହି ଲକ୍ଷଣଗୁଡ଼ିକ ଦେଖୁରେ କୁମାରୀ ଦେବୀର ଦୋଷ ବୋଲି ଜଣାଯାଏ । ଏହାର ଶାନ୍ତି ଉପାୟ କୁହା-

କୃତ୍ୱା ପୂଜା ପ୍ରକର୍ତ୍ତବ୍ୟା ପୁଷ୍ପଧୂପାଦଭି ସ୍ତତଃ ।
ବଟକା ମୃଷ୍ଟିକା ପୂପା ଅକ୍ଷତଂ ଗୁଡ଼ଦ୍ଧା ଦଧି ।
ଚତୁର୍ବର୍ଣ୍ଣ ପତାକାଶ୍ଚ ପ୍ରଦୀପାଃ ପୁଷ୍ପ ଚନ୍ଦନଂ ।
ଅପରାହ୍ନେ ବଥବା ଦଦ୍ୟା ନ୍ମନ୍ତ୍ରେଣାନେନ ମନ୍ତ୍ରବିତ୍ ।

ମନ୍ତ୍ରଃ— ଓଁ ନମୋ ଭଗବତେ ଚ ରାବଣାୟ ଚ ବାଳକଂ
ମୁଞ୍ଚ ଯୁଗ୍ମଂ ବଷ୍ଟିକାଷ୍ଟା ମନ୍ତ୍ରୋ ଋଂଶତି ବର୍ଣ୍ଣକଃ ।
ଇତି ପ୍ରଥମ ମାସ ଗ୍ରହ ଗୃହୀତ ବାଳକ ରକ୍ଷା ବିଧିଃ ।

* ଦ୍ୱିତୀୟ ମାସ ବାଳ ରକ୍ଷା *

ଦ୍ୱିତୀୟେ ମାସି ଗୃହ୍ଣାତି ବାଳକଂ ମୁକୁଟା ଗ୍ରହୀ ।
ତ୍ରୀବା ଭବନ୍ତି ନିଃଶ୍ୱାସୋ ବପୁଷଃ ପୀତ ଶୀତତା ।
ବଲ୍ଲ ଫଶୋଧଣୋଦ୍ଭବ ସେଚକାଜ ତଦାକ୍ଷସ୍ତ୍ରଂ ।
କ୍ଷୀରାନ୍ନଂ କୃଶର ପୂପ ତଳ ତଣ୍ଡୁଳ ସଯୁତଂ ।

---

ଯାଉଛି । ନଦୀର ଦୁଇତଡ଼ରୁ ମାଟି ଆଣି ଏହି ଦେବୀର ମୂର୍ତ୍ତି ଗଢ଼ି ଏକ ପାତ୍ରରେ ରଖିବ । ପୁଷ୍ପ ଧୂପାଦିରେ ତାହାଙ୍କୁ ପୂଜା କରିବ । ପିଠା, ଅରଖତ, ଗୁଡ଼, ଦହି, ଚାରି ବର୍ଣ୍ଣର ଚାରି ପତାକା, ଚାରି ଗୋଟି ଦୀପ, ଫୁଲ, ଚନ୍ଦନ, ଏହି ସବୁ ପଦାର୍ଥ ଏକ ପାତ୍ରରେ ମୂର୍ତ୍ତି ଆଗରେ ରଖିବ । ମନ୍ତ୍ର ଜାଣିବା ଲୋକ ବାଳକକୁ ଝାଡ଼-ଫୁଙ୍କିବ । ମନ୍ତ୍ର ଏହି—ଓଁ ନମୋ ଭଗବତେ ରାବଣାୟ ବାଳକଂ ମୁଞ୍ଚ ମୁଞ୍ଚ ସ୍ୱାହା । ଏହି ମନ୍ତ୍ରକୁ ଏକୋଇଶି ଥର ପଢ଼ି ସାତଥର ବାଳକ ଉପରେ ବୁଲାଇ ନୈଋତ ଦିଗରେ ସନ୍ଧ୍ୟା ସମୟରେ ନେଇ ବଳିଦେବ । ଏପରି କଲେ ବାଳକ ନିରୋଗୀ ହୋଇଯାଏ ।

ଦ୍ୱିତୀୟ ମାସରେ ବାଳକର ପୀଡ଼ା ଉପୁଜିଲେ, ମୁକୁଟା ଦେବୀର ଦୋଷ ଜାଣିବାକୁ ହେବ । ଏହାର ଲକ୍ଷଣ କୁହାଯାଉଛି । ବେକ ମୋଡ଼ି ରଖେ, ଅଙ୍ଗ କମ୍ପେ, ଶରୀର ହଳଦିଆ ଦିଶେ, ଶୀତଳ ଲାଗେ, ମୁହଁ ଶୁଖେ, ସ୍ତନପାନ କରେ ନାହିଁ, ଓଟାର ହୁଏ । ଏହାର ଉପାୟ କୁହାଯାଉଛି । ମାଟିରେ ଦେବୀର ମୂର୍ତ୍ତି ଗଢ଼ି ଏକ ପାତ୍ରରେ କ୍ଷୀରି, ଖେଚେଡ଼ି, ପୂଳ ପିଠା, ରାଶି ଗୁଳଳ, କଳା-

କୁଷ୍ଠମୁଷ୍ଠାଂଶୁକା ଲେପୈ ସ୍ତ୍ରବ ମାସେ ବଳିଂ ହରେତ୍ ।
କୁସୁମଂ ଲଶୁନଂ ନିମ୍ବଂ ସଂଚୂର୍ଣ୍ଣ୍ୟ ଧୂପୟେଚ୍ଛିଶୁଂ ।

✱ ତୃତୀୟ ମାସ ବାଳ ରକ୍ଷା ✱

ତୃତୀୟେ ମାସି ଗୃହ୍ଣାତି ବାଳକଂ ଗୋମୁଖୀ ଗ୍ରହା ।
ଉଦ୍ବେଗୋ ରୋଦନଂ ନିଦ୍ରା ବହୁମୂତ୍ର ପୁରୀଷକଂ ।
ନିମିଲୟନ୍ତି ନେତ୍ରାଣି ରୋଚତେ ମଧୁକଂ ତଥା ।
ପ୍ରିୟଙ୍ଗୁ ତଳ କୁଲ୍ମାଷଂ ଚତୁଃପିଣ୍ଡ ସମୋଦକୈଃ ।
ଜପା କୁସୁମ ସଂଯୁକ୍ତଂ ମଧ୍ୟାହ୍ନେ ବଳିମାହରେତ୍ ।
ଧୂପୟେତ୍ ତିଳ ସିଦ୍ଧାର୍ଥୈ ସ୍ତତୋ ମୁଞ୍ଚତି ସା ଗ୍ରହୀ ।

---

ଫୁଲ କଳା ଜଡ଼ା, ବସ୍ତ୍ରୁସ୍ତି ମିଶା ହେବାର ନୈବେଦ୍ୟ ଏ ସବୁ ପଦାର୍ଥ ଅଗରେ ରଖି ଦେବୀଙ୍କ ନିବେଦନ କରିବ । ପ୍ରଥମେ ଲେଖା ହୋଇଥିବା ମନ୍ତ୍ରକୁ ଏକୋଇଶି ଥର ପଢ଼ି, ସାତଥର ପିଲା ଉପରେ ନଉଁଛାଇ ପୂର୍ବ ଦିଗରେ ନେଇ ସନ୍ଧ୍ୟା ବେଳେ ବଳିଦେବ । କୁଙ୍କୁମ, ରସୁଣ, ନିମପତ୍ର ଚୂର୍ଣ୍ଣ କରି ପିଲାକୁ ଧୂପ ଦେବ—ଏପରି କଲେ ବାଳକ ନିରୋଗ ହେବ ।

ତୃତୀୟ ମାସରେ ଗୋମୁଖୀ ନାମ ଦେବୀ ବାଳକକୁ ଗ୍ରହଣ କରେ । ଏହାର ଲକ୍ଷଣ କୁହାଯାଏ । ବାଳକ ବିକଳ ହୋଇ କାନ୍ଦେ, ନିଦ ବହୁତ ଆସେ, ବହୁତ ମୂତେ, ବହୁତବାର ଝାଡ଼େ, ନେତ୍ର ବନ୍ଦ ରଖେ, ତାହାର ଦେହ ଦୁର୍ଗନ୍ଧରେ । ଏହାର ଶାନ୍ତି ଉପାୟ ଲେଖା ଯାଉଅଛି । ଫେଙ୍ଗୁ ଫୁଲ, ଧାତୁକୀ ଫୁଲ, ତଳ ଚାଉଳର ୪ ଗୋଟି ପିଣ୍ଡ, ଜାଈଫୁଲ ଏହି ସବୁ ଦ୍ରବ୍ୟକୁ ଏକ ପାତ୍ରରେ ରଖି ପୂର୍ବ କଥିତ ମନ୍ତ୍ରକୁ ଏକୋଇଶି ଥର ପଢ଼ି, ସାତ ଥର ପିଲା ଉପରେ ନଉଁଛାଇ ପାଣି ନାଳର ଦକ୍ଷିଣ ଦ୍ୱାରରେ ମଧ୍ୟାହ୍ନ ସମୟରେ ନେଇ ଥୋଇଦେବ । ଏପରି କଲେ ବାଳକ ନିରୋଗ ହେବ । ତିଳ, ରାଇ, ମିଶାଇ ବାଳକକୁ ଧୂପ ଦେବ । ଏହି ବିଧିରେ କଲେ ଗୋମୁଖୀ ଦେବୀର ଦୋଷ ଦୂରହେବ ।

॥ ଚତୁର୍ଥ ମାସ ବାଳ ରକ୍ଷା ॥

ଚତୁର୍ଥେ ମାସି ଗୃହ୍ଣାତି ବାଳକଂ ପିଙ୍ଗଳା ଗ୍ରହା ।
ପୟଃ ପାନାଚ୍ଚୁତଃ ଶୈତ୍ୟଂ ଭୁକ୍ତଦୋଷା ଶୋଷଣେ
ପୂତି ଗନ୍ଧସ୍ତୁ ଚେଷ୍ଟା ଚେ ନାସ୍ତି ପ୍ରତିକ୍ରିୟା ।
ନ ମନ୍ତ୍ରଂ ନୌଷଧଂ ତସ୍ୟ ବଳିଂ ତସ୍ୟ ନ କାରୟେତ୍ ।

॥ ପଞ୍ଚମ ମାସ ବାଳ ରକ୍ଷା ॥

ପଞ୍ଚମେ ମାସି ଗୃହ୍ଣାତି ବାଳକଂ ବଡ଼ବା ଗ୍ରହା ।
ଚେଷ୍ଟାରୋଚକଂ କମ୍ପୋ ମୁଖଶୋଷଣ ରୋଦନେ ।
ଶୀଦନ୍ତି ସର୍ବଗାତ୍ରାଣି ଜ୍ୱରାନ୍ତ୍ରୋ ନ ପିବେ ସ୍ତନଃ ।
ଓଦନଂ ପୋଳିକା ଶାକଂ ମତ୍ସ୍ୟମାଂସାନ୍ନ ଦାପୟେତ୍ ।
ଭକ୍ଷାଣି ଲଡ୍ଡୁକା ଚୈବ ସୁଗନ୍ଧିକା ପଦ୍ମକଂ ତଥା ।
ଦକ୍ଷିଣାଂ ଦିଶ ମାଶ୍ରିତ୍ୟ ମଧ୍ୟାହ୍ନେ ବଳିମାହରେତ୍ ।

---

ଚତୁର୍ଥ ମାସରେ ପୀଡ଼ା ଜାତ ହୁଅନ୍ତେ ପିଙ୍ଗଳା ନାମ ଦେବୀ ବାଳକକୁ ଗ୍ରହଣ କରେ । ଏହାର ଲକ୍ଷଣ କୁହାଯାଉଅଛି । ସ୍ତନପାନ କରେ ନାହିଁ, ଶରୀର ଧଳା ହୋଇଯାଏ, ହାତ ଗୋଡ଼, ମୁହଁ ଶୁଖିଯାଏ, ଶରୀରରୁ ଦୁର୍ଗନ୍ଧ ଜାତହୁଏ ! ଏହି ଲକ୍ଷଣକୁ ପିଙ୍ଗଳା ଦେବୀର ଦୋଷ ଜାଣିବାକୁ ହୁଏ । ଚତୁର୍ଥ ମାସରେ ଚିକିତ୍ସା, ବଳିଦାନ, ମନ୍ତ୍ର ଔଷଧ, ଯାହାକିଛି, କୈାଣସି କରଣୀୟ ନୁହେ ।

ପଞ୍ଚମ ମାସରେ ବାଳକକୁ ବଡ଼ବା ଦେବୀ ଗ୍ରହଣ କରେ । ଏହାର ଲକ୍ଷଣ କୁହାଯାଉଅଛି । ପ୍ରଥମରେ ଅରୁଚି ହୁଏ, କମ୍ପ ହୁଏ, ମୁହଁ ଶୁଖେ, ବହୁତ କାନ୍ଦେ, ଶରୀରର ସବୁ ସ୍ଥାନରେ ପୀଡ଼ା ଓ ଆୟାସ ହୁଏ, କ୍ଷୀର ପିଏ ନାହିଁ । ଏହାର ଉପାୟ କୁହାଯାଉଛି । ଭାତ, ପୋଇଶାକ, ମାଛ, ଲଡ଼ୁ, ଲଡ୍ଡୁକା, ପଞ୍ଚଗୋଟି ଧ୍ୱଜା, ପାଞ୍ଚଟି ପଦ୍ମଫୁଲ । ମାଟିରେ ଦେବୀର ମୂର୍ତ୍ତି ଗଢ଼ି ଏକ ପାତ୍ରରେ ରଖି ଏହି ସବୁ ଦ୍ରବ୍ୟ ତା' ଆଗରେ ଥୋଇବ । ପୂର୍ବ କଥିତ ମନ୍ତ୍ର ଏକୋଇଶି ଥର ପଢ଼ି ସାତଥର ପିଲା ଉପରେ ବୁଲାଇ ମଧ୍ୟାହ୍ନ ସମୟରେ ଦକ୍ଷିଣ ଦିଗରେ ନେଇ ବଳି ଦେବ । ଏତିକରେ ବାଳକ ଭଲ ହୁଏ—ବଡ଼ବାଦେବୀର ଦୋଷ ଦୂରହୁଏ ।

* ଷଷ୍ଠ ମାସ ବାଳ ରକ୍ଷା *

ଷଷ୍ଠେ ମାସି ତୁ ଗୃହ୍ଣାତି ପଦ୍ମାନାମ ଗ୍ରହୀ ଶିଶୁଂ ।
ତଚ୍ଚେଷ୍ଟା ରୋଦନଂ ଶୂଳଂ ସ୍ୱରଭ୍ରଂଶ ସ୍ତଥୈବ ଚ ।
ଶିଖି କୁକ୍କୁଟ ମେଷାଣାଂ ମାଂସଂ ମାସୋଦନଂ ସୁରା ।
କୁଳତ୍ଥଂ ଚେତ୍ତ ସଂପ୍ରୋକ୍ତ ବଳିନା ମୁଞ୍ଚତି ଗ୍ରହୀ ।

* ସପ୍ତମ ମାସେ ବାଳ ରକ୍ଷା *

ସପ୍ତମେ ମାସି ଗୃହ୍ଣାତି ବାଳକଂ ପୂତନା ଗ୍ରହୀ ।
କ୍ଷୀରଂ ପିବତି ବସ୍ତ୍ରଷ୍ଟ୍ୟା କୃଶୋ ରୋଦତି ଛର୍ଦ୍ଦିବାନ୍ ।
କୃଶରା ଚୌଦନଂ ମାଂସଂ ମଦ୍ୟଂ କ୍ଷୀରଂ ସୁରାସବଃ ।
କୁଲ୍ମାଷା ସ୍ତିଲ ଚୂର୍ଣ୍ଣଂ ଚ ଗନ୍ଧ ପୁଷ୍ପାଣି ଚୈବ ହି ।

---

ଷଷ୍ଠ ମାସରେ ପଦ୍ମାନାମ ଦେବୀ ବାଳକକୁ ଗ୍ରହଣ କରେ । ଏହାର ଲକ୍ଷଣ କୁହାଯାଉଛି । ପ୍ରଥମେ ବାଳକ ବହୁତ କାନ୍ଦେ, ଶୂଳ ହୁଏ, ତୋଣ୍ଟି ବସିଯାଏ, ବହୁତ ଲାଳ ମୁହଁରୁ ପଡ଼େ, ଏହାର ଉପାୟ କୁହା ଯାଉଛି । ମୟୂର ମାଂସ, କୁକୁଡ଼ା ମାଂସ, ମେଣ୍ଢା ମାଂସ, ବରଂ ଖେଚେଡ଼ି, ମଦର, କୋଳଥ, ଏହି ସବୁ ପଦାର୍ଥ ଏକ ପାତ୍ରରେ ଦେବୀ ମୂର୍ତ୍ତିର ଆଗରେ ରଖିବ । ମନ୍ତ୍ର, ଜପ, ସ୍ନାନ, ବଳିଦାନ, ବିଧି ଯାହା ସବୁ ପ୍ରଥମ ମାସ ଜନ୍ମରେ କରିବ । ଏପରି କଲେ ପିଲା ଭଲ ହୁଏ—ପଦ୍ମାଦେବୀର ଦୋଷ ଛାଡ଼ିଯାଏ ।

ସପ୍ତମ ମାସରେ ପୂତନା ନାମ ଦେବୀ ବାଳକକୁ ଗ୍ରହଣ କରେ । ଏହାର ଲକ୍ଷଣ ଏହି । ହେଲା କରି କ୍ଷୀର ପାନ କରେ, ସ୍ତନପାନ ସମୟରେ ତୁଣ୍ଡରୁ କ୍ଷୀର କାଢ଼େ, ଶରୀର କୃଶ ହୁଏ, ସବୁବେଳେ କାନ୍ଦେ, ବହୁତ ବାନ୍ତି କରେ । ଏହାର ଉପାୟ କୁହାଯାଉଛି । ନଦୀର ଦୁଇ ହୁଡ଼ାରୁ ମାଟି ଆଣି ଗୋଟିଏ କୁମ୍ଭୀର ତିଆରି କରି ରଖିବ । ଏହା ଆଗରେ ଖେଚେଡ଼ି ଭାତ, ମାଛ, ମାଂସ, ଦୁଧ, ମଦ, ଆସବ, କାଞ୍ଜିପାଣି, ରାଶିପିଠା, ଚନ୍ଦନ, ଫୁଲ, ଏହି ସବୁଦ୍ରବ୍ୟ ଏକ ପାତ୍ରରେ ରଖିବ । ପୂର୍ବ ମନ୍ତ୍ର ଏକୋଇଶ ବାର ପଢ଼ି ତିନଥର ବାଳକ ଉପରେ ଗଉଁଣ୍ଡିର ମଧ୍ୟାହ୍ନ

ପୂର୍ବାଂ ଦିଶଂ ସମାଶ୍ରିତ୍ୟ ମଧ୍ୟାହ୍ନେ ବଳିମାହରେତ୍ ।
ଅନ୍ୟ ସର୍ବଂ ପ୍ରକର୍ତ୍ତବ୍ୟଂ ପୂର୍ବୋକ୍ତଂ ତତ୍ କ୍ରମେଣ ବୈ ।

✱ ଅଷ୍ଟମ ମାସ ବାଲ ରକ୍ଷା ✱

ଅଷ୍ଟମେ ମାସି ସଂପ୍ରାପ୍ତେ ବାଳକଂ ଗୃହ୍ଣାତି ଅର୍ଜିକା ।
ଗାତ୍ରଭଙ୍ଗୋ ଜ୍ୱରୋଽକ୍ଷିରୁକ୍ ପ୍ରଲାପ ଶ୍ଛର୍ଦ୍ଦିରେବ ଚ ।
ଜଠରଂ ଦିଶମାଶ୍ରିତ୍ୟ ବଳିଂ ତସୈ୍ୟ ପ୍ରଦାପୟେତ୍ ।
ପ୍ରଥମୋକ୍ତ ପ୍ରକାରେଣ ଶେଷ ମନ୍ୟସ୍ତୁ ମାଚରେତ୍ ।

✱ ନବମ ମାସ ବାଲ ରକ୍ଷା ✱

ନବମେ ମାସି ସଂପ୍ରାପ୍ତେ ବାଳକଂ କୁମ୍ଭକର୍ଣ୍ଣିକା ।
ତଚ୍ଚେଷ୍ଟାଶ୍ଚେତକା ଛର୍ଦ୍ଦି ର୍ଜ୍ୱରୋଽତୀସାର ଚକ୍ଷୁତା ।
କୁଲ୍ମାଷ ପଲଲ କ୍ଷୀର ମତ୍ସ୍ୟ ମାଂସ କୃଶରନ ଚ ।
ଐଶାନ୍ୟାଂ ଦିଶି ମଧ୍ୟାହ୍ନେ ବଳିନା ମୁଞ୍ଚତି ଗ୍ରହା ।

---

ବେଳାରେ ପୂର୍ବଦିଗରେ ନେଇ ବଳି ଦେବ । ଆଉ ସକଳ ବିଧାନ ପ୍ରଥମ ମାସ ପରି ଅନ୍ୟମାନେ କରିବାକୁ ହେବ ।

ଅଷ୍ଟମ ମାସରେ ଅର୍ଜିକା ନାମ ଦେବୀ ବାଳକକୁ ଗ୍ରହଣ କରେ । ଏହାର ଲକ୍ଷଣ କୁହାଯାଏ । ସକଳ ଶରୀରରେ ପୀଡ଼ା ଜାତ ହୁଏ, ଜ୍ୱର ହୁଏ, ନେତ୍ର-ପୀଡ଼ା ହୁଏ, ପ୍ରଲାପ କରେ, ଛର୍ଦ୍ଦି କରେ । ଏହାର ଉପାୟ ସବୁ ପ୍ରଥମ ମାସ କ୍ରମରେ କରିବ । ପରେ ବଳିଦାନ ଉତ୍ତର ଦିଗରେ ଦେବ । ମନ୍ତ୍ର, ଜପ, ସ୍ନାନ, ଇତ୍ୟାଦି ସବୁ ପ୍ରଥମ ମାସ ଅନୁସାରେ କରିବ ।

ନବମ ମାସରେ କୁମ୍ଭକର୍ଣ୍ଣିକା ଦେବୀ ବାଳକକୁ ଧରେ । ଏହାର ଲକ୍ଷଣ କୁହାଯାଏ । ପ୍ରଥମେ ସ୍ତନପାନରେ ଅରୁଚି ହୁଏ, ଛର୍ଦ୍ଦି ହୁଏ, ଭୁଲି ଖୋଲିବା ସମୟରେ ଯେଉଁ ଗନ୍ଧ ହୁଏ, ବାଳକ ଶରୀରରୁ ସେପରି ଗନ୍ଧ ଜାତ ହୁଏ । ଆଖି ବୁଜି ରହେ । ଏହାର ଉପାୟ କୁହାଯାଉଛି । ପକ୍ଷୀ ମାଂସ, ଦୁଧ, ମତ୍ସ୍ୟ ମାଂସ, ଏହି ଦ୍ରବ୍ୟ ସହିତ ପ୍ରଥମ ମାସ ସହିତରେ ମଧ୍ୟାହ୍ନ ସମୟରେ ଐଶାନ୍ୟ ଦିଗରେ ନେଇ ବଳି ଦେବ । ମନ୍ତ୍ର ଜପାଦିକ ସବୁ ପ୍ରଥମ ମାସ ବିଧିରେ କଲେ କୁମ୍ଭକର୍ଣ୍ଣି ଦେବୀର ଦୋଷ ଦୂର ହୁଏ—ବାଳକ ଆରୋଗ୍ୟ ପାଏ ।

## * ଦଶମ ମାସ ବାଳ ରକ୍ଷା *

ଦଶମେ ମାସି ଗୃହ୍ଣାତି ବାଳକଂ ତାପସୀ ଗ୍ରହୀ ।
ତଚ୍ଚେଷ୍ଟା ଗାତ୍ର ଭଙ୍ଗଶ୍ଚ କ୍ଷୀରଦ୍ୱେଷୋଽକ୍ଷି ମୀଳନଂ ।
ପୀତଂ ବସ୍ତ୍ରଂ ତଥା ପୁଷ୍ପଂ ମତ୍ସ୍ୟଂ ମାଂସଂ ସୁରାସବଂ ।
କୁଲ୍ମାଷଂ ତିଳପିଷ୍ଟଂ ଚ ଗନ୍ଧ ପୁଷ୍ପାଣି ନୈବ ହି ।
ସ୍ୱସ୍ତିକାଃ ଷାଷ୍ଟିକଂ ଭକ୍ତଂ ଦିଶ୍ୟୁତ୍ତରସ୍ୟାଂ ସମାହରେଦ୍ଧି ।
ମଧ୍ୟାହ୍ନ ସମୟେ ନୂନଂ ତତୋ ମୁଞ୍ଚତି ସା ଗ୍ରହୀ ।

## * ଏକଦଶ ମାସ ବାଳ ରକ୍ଷା *

ମାସି ଚୈକାଦଶେ ନାମ୍ନୀ ଗୃହ୍ଣାତି ସୁଗ୍ରହୀ ଶିଶୁଂ ।
ତସ୍ୟ ଗୃହୀତମାତ୍ରସ୍ତୁ ସ ସ୍ୱସ୍ଥୋ ନ ପ୍ରଜାୟତେ ।
ନ ମନ୍ତ୍ରଂ ନୌଷଧଂ ତସ୍ୟ ବଳିଂ ଚାପି ନ ଦାପୟେଦ୍ଧି ।
ଯଦି ଦୃଷ୍ଟେ ଚେଦ୍ଦାତବ୍ୟ ପ୍ରଥମୋକ୍ତ କ୍ରମେଣ ବୈ ।

---

ଦଶମ ମାସରେ ତାପସୀ ନାମ ଦେବୀ ବାଳକକୁ ଗ୍ରହଣ କରେ । ଏହାର ଲକ୍ଷଣ କୁହାଯାଏ । ହାତ, ପାଦ ଭାଙ୍ଗେ, ସ୍ତନପାନ କରେ ନାହିଁ, ନେତ୍ର ବୁଜି-ରଖେ, ଯେଉଁ ଫୁଲଏ, ଏହାର ଉପାୟ କୁହାଯାଉଛି । ହଳଦୀ ଓ ମସୁରଡାଲି, ମାଛ,ମାଂସ, ମଦ କାଞ୍ଜିପାଣି, ତଳପିଠା, ଫୁଲ, ଚନ୍ଦନ, ଷାଠିକା ଧାନ୍ୟ ଗୁଡ଼ର ଘୃତ, ଏହି ସକଳ ଦ୍ରବ୍ୟ ଏକ ପାତ୍ରରେ ଦେବୀର ଆଗରେ ରଖିବ । ମଧ୍ୟାହ୍ନ ସମୟରେ ଉତ୍ତର ଦିଗରେ ବଳିଦାନ କରିବ । ମନ୍ତ୍ର, ଜପ, ସ୍ନାନ ଧୂପାଦି କର୍ମ ସବୁ ପ୍ରଥମ ମାସ ଅନୁସାରେ କଲେ ବାଳକ ଆରୋଗ୍ୟ ପାଏ—ତାପସୀ ଦେବୀର ଦୋଷ ଛାଡ଼ିଯାଏ ।

ଏଗାର ମାସରେ ସୁଗ୍ରହୀ ନାମ ଦେବୀ ବାଳକକୁ ଗ୍ରହଣ କରେ । ଏହି ଗ୍ରହୀ ଗ୍ରହଣ କରିବା ବାଳକ ଭଲ ହୁଏ ନାହିଁ । ଏଥିପାଇଁ ମନ୍ତ୍ର ନାହିଁ, ଔଷଧ ନାହିଁ । ଯେବେ ବଳିଦାନ ପ୍ରସ୍ତୁତ କରିବାକୁ ହୁଏ ତାହାହେଲେ ପ୍ରଥମ ମାସ ବିଧିକ୍ରମରେ କରିବ ।

✲ ଦ୍ୱାଦଶ ମାସ ବାଳ ରକ୍ଷା ✲

ଦ୍ୱାଦଶେ ମାସି ଗୃହ୍ଣାତି ବାଳକଂ ବାଳକା ଗ୍ରହୀ ।
ତଚ୍ଚେଷ୍ଟା ବେଦନଂ ଛର୍ଦ୍ଦିଃ ଶ୍ୱାସଶୁଷ୍କା ପୁନଃ ପୁନଃ ।
ଦଧ୍ୟନ୍ନ ତିଳ କୁଲ୍ମାଷ ମୋଦକାଶ୍ଚୈବ ବଳିଂ ହରେତ୍ ।
ମଧ୍ୟାହ୍ନ ସମୟେ ପ୍ରାଚ୍ୟାଂ ତତୋ ମୁଞ୍ଚତି ସା ଗ୍ରହୀ ।
କ୍ଷୀରି ବୃକ୍ଷ କଷାୟେଣ ସ୍ନାପୟେତ୍ ଉତ୍ ପ୍ରଶାନ୍ତୟେ ।
ପ୍ରଥମୋକ୍ତ ପ୍ରକାରେଣ ଶେଷମନ୍ୟ ସମାପୟେତ୍ ।

ଅଥ ବର୍ଷ ଗୃହୀତ ବାଳ ରକ୍ଷା

✲ ପ୍ରଥମ ବର୍ଷେ ✲

ଅଥ ବର୍ଷେ ଗୃହୀତସ୍ୟ ବାଳକସ୍ୟ ବମୁକ୍ତୟେ ।
ବଳିଂ ବକ୍ଷ୍ୟାମି ସୁଗମଂ ଯେନ ସମ୍ପଦ୍ୟତେ ସୁଖଂ ।
ପ୍ରଥମେ ବତ୍ସରେ ବାଳଂ ଗ୍ରହୀ ଗୃହ୍ଣାତି ନନ୍ଦନୀ ।
ଅରୋଚକାକ୍ଷି ବକ୍ଷେପୋ ଗାତ୍ର ଦାହଃ ପ୍ରବେଦନଂ ।

---

ଦ୍ୱାଦଶ ମାସରେ ବାଳିକା ନାମ ଦେବୀ ବାଳକକୁ ଗ୍ରହଣ କରେ । ଏହାର ଲକ୍ଷଣ କୁହାଯାଉଅଛି । ବହୁତ ବେଦନା କରେ, ଛର୍ଦ୍ଦି ହୁଏ, ଶ୍ୱାସ ହୁଏ, ଶୋଷ ବହୁତ ହୁଏ । ଏହାର ଶାନ୍ତି ଉପାୟ ଲେଖା ଯାଉଛି । ଦହି, ଗୁଡ଼ଲ, ସିଝି, କାଞ୍ଜିପାଣି, ଲଡ଼ୁ ଏହି ସବୁ ପଦାର୍ଥ ଦେବୀର ଆଗରେ ଏକ ପାତ୍ରରେ ରଖି ମଧ୍ୟାହ୍ନ ସମୟରେ ପୂର୍ବ ଦଗରେ ନେଇ ବଳି ଦେବ । (କ୍ଷୀରଥିବା) ଗଛର ବକଳକୁ ଉତାରି ଆଣି ତାହାର କଷାୟରେ ବାଳକକୁ ସ୍ନାନ କରାଇବ । ବାକି ସବୁ ମନ୍ତ୍ର ଜପାଦି କର୍ମ, ପ୍ରଥମ ମାସ ଘତରେ କରନେଲେ ବାଳକ ଆରୋଗ୍ୟ ପାଏ—ବାଳିକା ଗ୍ରହୀର ଦୋଷ ଛାଡ଼ଯାଏ ।

ପ୍ରତି ମାସର ବାଳରକ୍ଷା ବିଧାନ କହିବା ପରେ ବର୍ଷ ଗୃହୀତ ବାଳକଙ୍କୋ ବିଧି କୁହାଯାଉଅଛି, ଯାହାଦ୍ୱାରା ବାଳକର ସୁଖପ୍ରାପ୍ତି ହୋଇଥାଏ । ପ୍ରଥମ ବର୍ଷରେ ନନ୍ଦନୀ ନାମ ଦେବୀ ବାଳକକୁ ଗ୍ରହଣ କରେ । ଏହାର ଲକ୍ଷଣ କୁହାଯାଉଛି । ଅରୁଚି ହୁଏ, ନେତ୍ର ରୁଜ ରଖେ, ଶରୀରରେ ଦାହ ହୁଏ, ବହୁତ କାନ୍ଦେ,

ପତନଂ ଚ ସଦା ଭୂମୌ ଚେଷ୍ଟିତଂ ତସ୍ୟ ଲକ୍ଷୟେତ୍ ।
ଗୁଡ଼ାନ୍ନଂ ଦଧି କୁଲ୍ମାଷ ପୋଳିକା ମତ୍ସ୍ୟମାଂସକଂ ।
ତିଲ ଚୂର୍ଣ୍ଣମିଶ୍ରେ ଚୈବ ତିଲ ତୈଳେନ ଦୀପକଂ ।
ପୂର୍ବାଂ ଦିଶଂ ସମାଶ୍ରିତ୍ୟ ନିର୍ଗ୍ରହଂ କ୍ଷେମାଦହେତ୍ ।
କେଶ ଗୋଶୃଙ୍ଗ ଗୋଦନ୍ତୈ ର୍ବାଳକଂ ଧୂପୟେତ୍ ଇତଃ ।
ସ୍ନାପୟେତ୍ ପଞ୍ଚଗବ୍ୟେନ ତଦା ସା ମୁଞ୍ଚତି ଗ୍ରହା

✱ ଦ୍ୱିତୀୟ ବର୍ଷ ବାଳ ରକ୍ଷା ✱

ଦ୍ୱିତୀୟେ ବର୍ଷରେ ବାଳଂ ଗୃହ୍ଣାତି ରେବତୀ !
ରକ୍ତ ମୂତ୍ରଂ ଜ୍ୱରଧ୍ମାନଂ ପଦ୍ମକେଶର ବର୍ଣ୍ଣିତା ।
ଷ୍ଟୁରତେ ଦକ୍ଷିଣଂ ହସ୍ତଂ ରୋଦନଂ ଚ ପୁନଃ ପୁନଃ ।
ତିଲ ପୂପକ କୁଲ୍ମାଷ ଗୁଡ଼ାନ୍ନ ଦଧିମୋଦକୈଃ ।

---

ସବୁବେଳେ ଭୂମି ତଳରେ ପଡ଼ିରହେ, ଅର୍ଥାତ୍ ଶେଯ ଉପରେ ଶୁଏ ନାହିଁ । ଏହି ସବୁ ଲକ୍ଷଣ ଦେଖି ନନ୍ଦନା ନାମ ଦେବୀର ଦୋଷ ଜାଣିବାକୁ ହେବ । ଏବେ ଏହାର ଉପାୟ କୁହାଯାଉଅଛି । ଗୁଡ଼ଭାତ, ଦହି, କାଞ୍ଜିପାଣି, ପୁଳି, ମାଛ ମାଂସ, ମଦରା, ଗୁଣ୍ଡିପିଠା, ରାଶି ତେଲର ଦୀପ ପାଞ୍ଚ ଗୋଟି, ପାଞ୍ଚରଙ୍ଗର ତୋଳା ପାଞ୍ଚ ଗୋଟି, ଏହି ସବୁ ପଦାର୍ଥ ଏକ ପାତ୍ରରେ ରଖିବ । "ଓଁ ନମୋ ଭଗବତେ-ରେବଣାୟ ବାଳକଂ ମୁଞ୍ଚ ମୁଞ୍ଚ ସ୍ୱାହା ।" ଏହି ମନ୍ତ୍ରକୁ ଏକୋଇଶ ଥର ପଢ଼ି ସାତ ଥର ପିଲା ଉପରେ ନିଉଛାଇ ପୂର୍ବ ଦିଗରେ ନେଇ ବଳିଦେବ । ତହୁଁ ରାତ୍ର ବଳିଦାନ ଦେବ । ପରେ ମନୁଷ୍ୟ ମୁଣ୍ଡ ବାଳ, ଗାଈଶିଙ୍ଗ, ଗାଈ ଦାନ୍ତ ମିଶାଇ ବାଳକକୁ ଧୂପ ଦେବ । ପଛେ ପଞ୍ଚଗବ୍ୟରେ ପିଲାକୁ ସ୍ନାନ କରାଇବ । ବ୍ରାହ୍ମଣ ଭୋଜନ ଦେବ । ଏପରି କଲେ ନନ୍ଦନା ନାମ ଦେବୀ ବାଳକକୁ ଛାଡ଼ି ଯାଏ ।

ଦ୍ୱିତୀୟ ବର୍ଷରେ ରେବତୀ ନାମ ଦେବୀ ବାଳକକୁ ଗ୍ରହଣ କରେ । ଏହାର ଲକ୍ଷଣ କୁହାଯାଉଛି । ରକ୍ତପରିସ୍ରାବ ହୁଏ, ଜ୍ୱର ହୁଏ, ପେଟଫୁଲେ, ପଦ୍ମକେଶର ପରି ଦେହ ହୋଇଯାଏ । ଡାହାଣ ହାତ ବହୁତ ହଲେ, ଅନେକ ବାର କାନ୍ଦେ । ରାଶି ପିଠା, କାଞ୍ଜିପାଣି, ଗୁଡ଼ଭାତ, ଦହି, ଲଡ଼ୁ, କୌଣସି ଫୁଲର ଫଳ, ଏହି

ସଫଳଂ ସପ୍ତଶସ୍ତ୍ରଦ୍ୟ ପ୍ରାଚ୍ୟାଂଦିଶି ବଳିଂ ହରେତ୍ ।
ଧୂପୟେତ୍ ସର୍ପନିର୍ମୋକ ସ୍ତକଭ୍ୟାଂ ମୁଞ୍ଚତି ଗ୍ରହୀ ।

*** ତୃତୀୟ ବର୍ଷ ବାଳ ରକ୍ଷା ***

ତୃତୀୟେ ବର୍ଷରେ ବାଳଂ ଗୃହ୍ଣାତି ଧନଦା ଗ୍ରହୀ ।
ଅବୀକ୍ଷଣ ମନାହାରଂ କୁରୁତେ ଶୋଷାଙ୍ଗ ଖାଦନେ ।
ସ୍ଫୁରଣଂ ବାମପାଦସ୍ୟ ଛର୍ଦ୍ଦନଂ ତଥ ଚେଷ୍ଟିତଂ ।
ଦଧି ମାଂସ ସୁରାମତ୍ସ୍ୟ ସପ୍ତାନ୍ନ ତଲ ପିଷ୍ଟକୈଃ ।
ପ୍ରତିମାଞ୍ଚାଂ ଫଳୈର୍ଦୀପୈଃ ସହୋଦାଚ୍ୟାଂ ବଳିଂ ହରେତ୍ ।
ପିଚ୍ଛୈର୍ମୟୂର ମୃଣ୍ଡେନ ଧୂପିତୋ ମୁଞ୍ଚତି ଗ୍ରହୀ ।

---

ସବୁ ଦ୍ରବ୍ୟ ଗୋଟିଏ ପାତ୍ରରେ ରଖି, ତା' ଉପରେ ଦୀପକଟା ଖଣ୍ଡେ ଥୋଇବ । ଏକୋଇଶ ଥର ମନ୍ତ୍ର ପଢ଼ି ସାତଥର ପିଲା ଉପରେ ବୁଲାଇ ପୂର୍ବ ଦିଗରେ ନେଇ ବଳି ଦେବ । ସାପକାତି, ଗନ୍ଧ, ଏହାର ଧୂପ ପିଲାକୁ ଦେବ । ଏହାଛଡ଼ା ଅବଶିଷ୍ଟ କର୍ମ ସବୁ ପ୍ରଥମ ବର୍ଷ କ୍ରମରେ କରିବ । ଏପରି କଲେ ପିଲା ଭଲ ହୁଏ— ଗୋଦନୀ ନାମ ଦେବୀର ଦୋଷ ଦୂର ହୋଇ ଯାଏ ।

ତୃତୀୟ ବର୍ଷରେ ଧନଦା ନାମ ଦେବୀ ବାଳକକୁ ଗ୍ରହଣ କରେ । ଏହାର ଲକ୍ଷଣ କୁହାଯାଉଛି । ପିଲାକୁ ମଧ ଦେଖି ପାରେ ନାହିଁ, ଅହାର କରେ ନାହିଁ, ଜ୍ୱରହୁଏ, ଓଠ ଶୁଖିଯାଏ, ଶୋଷ ହୁଏ, ଦେହରେ ପୀଡ଼ା ହୁଏ, ବାମପାଦ ଡିଏଁ, ବାନ୍ତି ହୁଏ । ଏହି ସବୁ ଲକ୍ଷଣରୁ ଧନଦା ଦେବୀର ଦୋଷ ଜଣାଯାଇ ପାଏ । ଏହାର ଶାନ୍ତି ଉପାୟ କୁହାଯାଉଛି । ଦହି, ମାଂସ, ମଦ, ମାଛ, ସାତ ପ୍ରକାର ଭାତ, ରାଶି ପିଠା, ମାଟିର ମୂର୍ତ୍ତି, ଫଳ, ଦୀପ ପାଞ୍ଚଟି, ପାଞ୍ଚରଙ୍ଗରେ ପତାକା ପାଞ୍ଚଗୋଟି । ଏହି ଦ୍ରବ୍ୟଗୁଡ଼ିକ ଏକ ପାତ୍ରରେ ରଖିବ । ଏକୋଇଶ ଥର ମନ୍ତ୍ର ପଢ଼ି ସାତ ଥର ପିଲା ଉପରେ ବୁଲାଇ ଉତ୍ତର ଦିଗରେ ନେଇ ବଳି ଦେବ । ମୟୂର ପକ୍ଷୀ ଧୂପ ଦେବ । ବାକି ସବୁ କର୍ମ ପ୍ରଥମ ବର୍ଷ ବିଧାନରେ କରିବ । ଏପରି କଲେ ବାଳକ ଆରୋଗ୍ୟ ପାଏ—ଦେବୀର ଦୋଷ ଦୂର ହୁଏ ।

✻ ଚତୁର୍ଥ ବର୍ଷ ବାଲ ରକ୍ଷା ✻

ଚତୁର୍ଥେ ବତ୍ସରେ ବାଲଂ ଗ୍ରହୀ ଗୃହ୍ଣାତି ଚଞ୍ଚଳା ।
ଚେଷ୍ଟିତଂ ତସ୍ୟ ବକ୍ଷ୍ୟେହଂ ଜ୍ୱରଃ ଶ୍ୱାସାଙ୍ଗ ସାଦନେ ।
ତିଲ କୃଷ୍ଣାନ୍ନ ବାସୋଭିଃ ସାର୍ଦ୍ଧଂ ତସ୍ୟ ବଲିଂ ହରେତ୍ ।
ମେଷ ଶୃଙ୍ଗସ୍ୟ ଧୂପେନ ତତୋ ମୁଞ୍ଚତି ସା ଗ୍ରହୀ ।

✻ ପଞ୍ଚମ ବର୍ଷ ବାଲ ରକ୍ଷା ✻

ପଞ୍ଚମେ ବତ୍ସରେ ବାଲଂ ଗ୍ରହୀ ଗୃହ୍ଣାତି ନର୍ତ୍ତିକା ।
ଉଦ୍ବେଲନଂ ମୁହୁ ମୂର୍ଚ୍ଛଂ ଗାତ୍ର ସ୍ଫୁରଣ ସାଦନେ ।
ମୁଖଶୋଷଣ ବୈବର୍ଣ୍ଣ୍ୟ ଚେଷ୍ଟିତଂ ତସ୍ୟ ଲକ୍ଷୟେତ୍ ।
ମତ୍ସ୍ୟ ମୂଲକ ମାଂସାନ୍ନ ପକ୍ୱାନ୍ନଂ କୃଶର ପୟଃ ।

---

ଚତୁର୍ଥ ବର୍ଷରେ ଚଞ୍ଚଳା ନାମ ଦେବୀ ବାଳକକୁ ଗ୍ରହଣ କରେ । ଏହାର ଲକ୍ଷଣ କୁହାଯାଉଅଛି । ଜ୍ୱର ହୁଏ, ଶ୍ୱାସ ହୁଏ, ଅଙ୍ଗପୀଡ଼ା ହୁଏ, ଅଚେତା-ରହେ, ଆଖି ବୁଲାଇ ରଖେ, ବହୁତ କାନ୍ଦେ । ଏହାର ଉପାୟ କୁହାଯାଉଅଛି । କଳା ରାଶି, ପିଠା, ଭାତ, ମାଛ, ପାଞ୍ଚ ଧ୍ୱଜା, ପାଞ୍ଚ ଦୀପ, ମାଟିର ମୂର୍ତ୍ତି । ଏହି ସବୁ ପଦାର୍ଥ ଏକ ପାତ୍ରରେ ରଖି କଳାକନା ଘୋଡ଼ାଇ ପୂର୍ବ ଦଗରେ ନେଇ ବଳି ଦେବ । ଏପରି ତିନିଦିନ ପର୍ଯ୍ୟନ୍ତ କରିବ । ମେଣ୍ଢା ଶିଙ୍ଗ ଗୁଣ୍ଡି ପିଲକୁ ଧୂପ ଦେବ ଅଉ ସବୁକର୍ମ ପ୍ରଥମ ବର୍ଷ ନିୟମରେ କଲେ ବାଳକ ଆରୋଗ୍ୟ ହୁଏ ।

ପଞ୍ଚମ ବର୍ଷରେ ନର୍ତ୍ତିକା ନାମ ଦେବୀ ବାଳକକୁ ଗ୍ରହଣ କରେ । ଏହାର ଲକ୍ଷଣ କୁହାଯାଉଛି । ଉଦ୍ବେଗ ହୁଏ, ବହୁତ ଥର ମୂର୍ଚ୍ଛା, ଦେହ ସ୍ଫୁରଇଟେ, ଦେହ ପୀଡ଼ା ହୁଏ, ମୁଖ ଶୁଖିଯାଏ, ଶରୀରର ବର୍ଣ୍ଣ ଭିନ୍ନ ହୋଇ ଯାଏ । ଏହି ଲକ୍ଷଣ ଦେଖି ନର୍ତ୍ତିକା ଦେବୀର ଦୋଷ ଜାଣିବାକୁ ହୁଏ । ଏବେ ଏହାର ଉପାୟ କୁହାଯାଉଅଛି । ମାଟିରେ ଦେବୀର ମୂର୍ତ୍ତି ତିଆର କରି ଏକ ପାତ୍ରରେ ରଖି, ତାହାର ଆଗରେ ଏହି ସବୁ ପଦାର୍ଥ ରଖିବ । ମାଛ, ମୂଳା, ମାଂସ, ଭାତ, ଖେଚେଡ଼ି, ଦୁଧ, ଖୀର, ସୁରା, ରାଶି, ପାଞ୍ଚରଙ୍ଗରେ ପାଞ୍ଚଟି ପତାକା, ପାଞ୍ଚଟି ଦୀପ, ପଣା, ପିଠା, ପକ୍ଷି ମାଂସ ଗୋଟିଏ ଫଳ ଏହାସବୁ ଏକ ପାତ୍ରରେ ରଖି ରଙ୍ଗ

ଚାମ୍ସଂ ଚ ଘୃତ ମଦ୍ୟଂ ତିଳଂ ଗୈକ୍ତଂ ବଳିଂ ତଥା ।
ସଫଳଂ ସଂଭୃଟାଛନ୍ନଂ ସପ୍ତବସଂ ବଳିଂ ହରେତ୍ ।
ରାଜିକା କେଶ ଗୋଦନ୍ତ ଲଶୁନୈର୍ ଘୃତେ ଧୂପୟେତ୍ ।
ଦିନତ୍ରୟଂ ସନ୍ଧ୍ୟାନେନ ତତୋ ମୁଞ୍ଚତି ସା ଗ୍ରହୀ ।

---

✱ ଅଥ ସାଧାରଣ ବାଳ ରକ୍ଷା ✱

ଅଥାତଃ ସଂପ୍ରବକ୍ଷ୍ୟାମି ବାଳାନାଂ ହିତକାମ୍ୟୟା ।
ବଳିଂ ସାଧାରଣଂ ଚୈବ ଗ୍ରହାନ୍ ରୋଗାଂ ସ୍ତଥୈବ ଚ ।

✱ ଅଥ ପୂତନାଗ୍ରହୀ ଲକ୍ଷଣ ✱

ଅତ୍ୟନ୍ତ ମଳିନା ସ୍ତ୍ରୀର୍ଣ୍ଣେ ଶଯ୍ୟାନଂ ନିର୍ଜନେ ସ୍ଥଳେ ।
ସ୍ୱପନ୍ତଂ ପୂତନା ନାମ ଗ୍ରହୀ ଗୃହ୍ଣାତି ବାଳକଂ ।
ତତୋ ହିକ୍କାୟୁତଃ ଶ୍ୱାସୀ ସ୍ତନ ଦ୍ୱେଷୀ ଚ କମ୍ପବାନ୍ ।
ଛର୍ଦ୍ଦିମାଂଶ୍ଚ ପ୍ରଜାୟେତ ନିଶି ଜାଗର୍ତ୍ତି ସଂରୁଦନ୍ ।
ସ୍ୱାପୋ ଦିବା ରୋମହର୍ଷ ଅସଂ ଶୋଷଶ୍ଚ ଜାୟତେ ।
ଗୁଦେ ରୋଗଶ୍ଚ ତସାଶୁ ବଳିଦୈର୍ଯ୍ୟଃ ପ୍ରଶାମ୍ୟତେ ।

---

କନା ଘୋଡ଼ାଇ ଏକୋଇଶ ଥର ମନ୍ତ୍ର ପଢ଼ି ସାତ ଥର ପିଣ୍ଡ ଉପରେ ନିର୍ଛାଇ ପଶ୍ଚିମ ଦିଗକୁ ନେଇ ବଳିଦେବ । ଏହିପରି ସାତ ଦିନ ପର୍ଯ୍ୟନ୍ତ ବଳିଦାନ କରିବ । ରାଇ, ମନୁଷ୍ୟ ମୁଣ୍ଡ ବାଳ, ଗାଈ ଦାନ୍ତ, ରଶୁଣ, ଏହାର ଧୂପ ପିଲାକୁ ତିନିଥର ଦେବ । ଏପରି କଲେ ଦେବୀର ଦୋଷ ଦୂର ହୋଇଯାଏ ।

ଏଥିଉତ୍ତାରୁ ବାଳକମାନଙ୍କର ହିତକାରୀ ସାଧାରଣ ଗ୍ରହର ବଳି କୁହାଯାଇଅଛି ଏବଂ ସାଧାରଣ ରୋଗ ମଧ୍ୟ କୁହା ଯାଇଅଛି ।

ପ୍ରଥମେ ପୂତନା ଗ୍ରହୀର ଲକ୍ଷଣ କୁହାଯାଏ । ଅତ୍ୟନ୍ତ ମଳିନ ଶଯ୍ୟା ଉପରେ ଶୋଇଥିବା ବାଳକକୁ, ଅଥବା ନିର୍ଜନ ସ୍ଥାନରେ ଶୋଇଥିବା ବାଳକକୁ ପୂତନା ନାମ ଗ୍ରହୀ ଗ୍ରହଣ କରେ । ଏହାର ଲକ୍ଷଣ କୁହାଯାଉଅଛି । ଆଗ ହାକୁଟି ଜାତହୁଏ, ଶ୍ୱାସହୁଏ, କ୍ଷୀର ପିଏନାହିଁ, କମ୍ପ ଜାତ ହୁଏ, ବାନ୍ତିକରେ, ରାତିରେ ଅନିଦ୍ର ରହେ, ସବୁବେଳେ କାନ୍ଦେ, ଦିବସରେ ଶୋଏ, ବୃମ ଟାଙ୍କୁ

କୃଶରାନ୍ନଂ ପୂର୍ଣ୍ଣକୁମ୍ଭଃ ସହେମା ତିଳ ଚୂର୍ଣ୍ଣକଂ ।
ଧ୍ୱଜା ଗନ୍ଧସ୍ତୁ ପୁଷ୍ପାଣି ଧୂପକଂ ଦୀପକଂ ବଳିଃ ।
ବାଳାନାଂ କ୍ରୀଡ଼ନ ସ୍ଥାନେ ଦେୟସ୍ତୋ ମନ୍ତ୍ରେଣ ମନ୍ତ୍ରିଣା ।
ମନ୍ତ୍ରଃ— ନୀଳାମ୍ବରଧରେ ଦେବ ପୂତନେ ବକ୍ତ୍ରତାନନେ ।
ଶିଶୋ ର୍ବିକାରନ୍ନୁଷସ୍ୱ ପ୍ରଗୃହ୍ଣୀଷ୍ୱ ବଳିଂ ତ୍ୱିମଂ ।

* ଅଥ ମହାପୂତନା ଗ୍ରହୀ ଲକ୍ଷଣ *

ତାଡ଼ିତଃ ସଂପତେଦ୍ଦ୍ରୁଷ୍ଟ ଦୃଷ୍ଟ୍ୱାଂବାନ୍ୟଃ ପତେ ତ୍ତଥା ।
ବାଳଂ ମହାପୂତନା ସ୍ୟାଦ୍‌ଗୃହ୍ଣାତି ଚ ତତୋ ଜ୍ୱରଃ ।
ଛାର୍ଦ୍ଦି ଚ ଦିବାରାତ୍ରୌ ତଂ ଚ ଭୁଂକ୍ତେ ବମତ୍ୟେ ପି ।
କାସଃ ଶ୍ୱାସୋ ଽକ୍ଷିରୋଗଶ୍ଚ ପୂତିଗନ୍ଧଃ ପ୍ରଜାୟତେ ।
ଅନ୍ନଂ ମାଂସଂ ଚ ରକ୍ତଂ ଚ ଗନ୍ଧପୁଷ୍ପାଣି ବାୟସୀ ।
ଧୂପଦୀପୌ ହରଣ୍ୟେନ ଯୁକ୍ତଃ ପୂର୍ଣ୍ଣଘଟ ସ୍ତଥା ।

---

ଉଠେ, ମୁହଁ ଶୁଖିଯାଏ, ଗୁଦ ରୋଗ ହୁଏ । ଏହି ସବୁ ଲକ୍ଷଣ ଯୋଗୁଁ ଏହି ଦେବୀର ଦୋଷ ବୋଲି ଜଣାଯାଏ । ଏହାର ଶାନ୍ତିସକାଶେ ଉପାୟ କୁହାଯାଉଛି । ଖେଚଡ଼ି, ଜଳପୂର୍ଣ୍ଣ କଳସ, ତହିଁରେ ସୁନାଟାକା ପକାଇବ । ରାଶିପିଠା, ଧ୍ୱଜା, କିଛି ସୁବାସ ଦ୍ରବ୍ୟ, ଫୁଲ, ଧୂପ, ଦୀପ, ଏହି ସବୁ ପଦାର୍ଥ ଏକ ମାଟି ପାତ୍ରରେ ରଖି ଏକୋଇଶ ଥର ମନ୍ତ୍ରରେ ମନ୍ତ୍ରିତ କରି ପିଲାମାନଙ୍କ ଖେଳ ପଡ଼ିଆରେ ନେଇ ଏହି ବଳି ଦେଇ ଆସିବ । ଏପରି କଲେ ଦେବୀର ଦୋଷ ଛାଡ଼ିଯାଏ— ବାଳକ ସୁସ୍ଥ ହୁଏ । ମନ୍ତ୍ର—"ନୀଳାମ୍ବରଧରେ ଦେବୀତି" ।

ଏବେ ପୁଣି ମହାପୂତନା ଗ୍ରହର ଲକ୍ଷଣ କୁହାଯାଉଅଛି । ବାଳକ ତାଡ଼ିତ ହେଲା ପରେ ତଳେ ପଡ଼େ, ଅଥବା ଚୁପ୍‌ଚାପ୍ ହୋଇ ତଳେ ପଡ଼େ, ଏହିପରି ଅବସ୍ଥାରେ ବାଳକକୁ ମହାପୂତନା ଗ୍ରହଣ କରେ । ପ୍ରଥମେ ଜ୍ୱର ହୁଏ, ଦିନ ଓ ରାତିରେ ପିଲା ଶୋଏ ନାହିଁ, ଯାହାକିଛି ଖାଇଥାଏ ତାହା ବାନ୍ତି କରେ, ଶ୍ୱାସ ହୁଏ, କାଶ ହୁଏ, ଆଖି ରୋଗହୁଏ, ଶରୀରରୁ ଦୁର୍ଗନ୍ଧ ଜାତ ହୁଏ । ଏହି ଲକ୍ଷଣରୁ ଦେବୀର ଦୋଷ ଜାଣିବାକୁ ହୁଏ । ଏବେ ଏହାର ଉପାୟ କୁହାଯାଉଛି । ଅନ୍ନ,

ସ୍ନୁହୀ ବୃକ୍ଷସ୍ୟ ମୂଳେ ତୁ ବଳିଂ ମନ୍ତ୍ରେଣ ନିକ୍ଷିପେତ୍ ।

ମନ୍ତ୍ରଃ— କପାଳେ ଚଣ୍ଡିଗ୍ରମୁଣ୍ଡେ କାଷାୟାମ୍ବରଧାରିଣି ।

ରାକ୍ଷସୀ ପୂତନେ ଦେବ ଦ୍ରଗୃହ୍ଣୀଷ୍ୱ ବଳିଂ ହ୍ରିମଂ ।

✱ ଅଥ ଊର୍ଦ୍ଧ୍ୱପୂତନା ଗ୍ରହୀ ଲକ୍ଷଣ ✱

ଲୋଭାଦନା ତୁ ଯଃ କୁର୍ଯ୍ୟା ତିରସ୍କାରଂ ବନେ ପୁରେ ।

ଦେବ୍ୟୋର୍ଦ୍ଧ୍ୱ ପୂତନା ତସ୍ୟ ବାଳଂ ସଙ୍କ୍ରମତେ ଗ୍ରହୀ ।

ତତୋ ଜ୍ୱରୀ ଗୃକ୍ଷିରୋଗୀ ସନ୍ଦ୍ରଷ୍ଟ ଦବା ଭବେତ୍ ।

ବନ୍ଦ୍ରୋଽପି ନିଶାୟାଂ ତୁ କାସ ଯୁକ୍ତଶ୍ଚ ଜାୟତେ ।

ଅନ୍ନଂ ମାଂସଂ ଚ ରୁଧିରଂ ରକ୍ତବସ୍ତ୍ରଂ ଚ ଚନ୍ଦନଂ ।

ସନ୍ଧରଣ୍ୟଃ ପୂର୍ଣ୍ଣକୁମ୍ଭଃ ସ୍ନୁହୀମୂଳେ ନିଶାମୁଖେ ।

ମନ୍ତ୍ରଃ— ଓଂ ଥୋର୍ଦ୍ଧ୍ୱପୂତନେ ଦେବ ପ୍ରଗୃହ୍ଣୀଷ୍ୱ ବଳିଂହ୍ରିମଂ ।

ଶିଶୋ ବିକାରାନ୍ ମୁଞ୍ଚାଦ୍ୟ ରକ୍ତାଭେ ରକ୍ତଦର୍ଶନେ ।

---

ମାଂସ, ରକ୍ତ, ସୁଗନ୍ଧ ଫୁଲ, ଧୋବ କନା, ରଙ୍ଗ କନା ଧୂପ, ଦୀପ, ଜଳପୂ[ର୍ଣ୍ଣ] କୁମ୍ଭ, ତହିଁରେ ଚୂନାପାଣି ଟୋଳିବ । ଏହି ସବୁ ପଦାର୍ଥ ମାଟି ପାତ୍ରରେ ରଖି ଏକୋଇଶ ବାର ମନ୍ତ୍ର ପଢ଼ି ବାଳକ ଉପରେ ନଉଁଛାଇ ସିଜୁ ଗଛ ମୂଳରେ ବଳି ଦେଇ ଆସିବ । ଏପରି କଲେ ଦେବୀର ଦୋଷ ଦୂର ହୁଏ—ବାଳ[କ] ଆରୋଗ୍ୟ ପାଏ । ମନ୍ତ୍ର—"କପାଳେ ଚଣ୍ଡିଗ୍ରମୁଣ୍ଡେ" ଇତି ।

ଏବେ ଊର୍ଦ୍ଧ୍ୱପୂତନା ଦେବୀର ଲକ୍ଷଣ କୁହାଯାଉଅଛି । ଯେଉଁ ପୁରୁ[ଷ] ଲୋଭ ଦ୍ୱାରା ବା ଗର୍ବାଦି ହେତୁରେ ବନରେ ଅଥବା ଗ୍ରାମରେ କୌଣସି ଦେବ[ତାର] ତାର ନିନ୍ଦା ବା ତିରସ୍କାର କରିଥାଏ, ଏହି ଲୋକର ବାଳକକୁ ଊର୍ଦ୍ଧ୍ୱପୂତ[ନା] ନାମ ଦେବୀ ଆକ୍ରମଣ କରେ । ଏବେ ଏହାର ଲକ୍ଷଣ କୁହାଯାଉଛି । ଆଗ ଜ୍ୱ[ର] ହୁଏ, ଆଖି ରୋଗ ହୁଏ, ଦାନ୍ତରେ ଛଦ ଅପେ, ରାତିରେ ଶୋଏ ନାହିଁ, କା[ଶ] ଜନ୍ମିତ ହୁଏ, ଏହାର ଶାନ୍ତି ଉପାୟ କୁହାଯାଉଅଛି । ଅନ୍ନ, ମାଂସ, ର[କ୍ତ] ରଙ୍ଗ କନା, ରକ୍ତ ଚନ୍ଦନ, ଚୂନାପାଣି ପଡ଼ିଥିବା ଜଳପୂର୍ଣ୍ଣ କୁମ୍ଭ ପତାକା, ଦୀପ, ଏହି ସକଳ ପଦାର୍ଥ ଏକ ମାଟିପାତ୍ରରେ ରଖି ଏକୋଇଶ ଥର ମନ୍ତ୍ର ପଢ଼ି ତି

❁ ଅଥ ବାଳକାନ୍ତା ଗ୍ରହୀ ଲକ୍ଷଣ ❁

ଋତୌ ସ୍ୱଦାରଗମନଂ କୃତ୍ୱା ସ୍ନାନାଦି ବର୍ଜିତଃ ।
ଅନୃତୌ ଶୌଚହୀନସ୍ତୁ ସ୍ୱପେ ଯାଳକ ତଳ୍ପକେ ।
ତଦା ଫକ୍ଷମତେ ବାଳଂ ବାଳକାନ୍ତା ମହାଗ୍ରହୀ ।
ତତଃ ପକ୍ଷାଭିଘାତଃ ସ୍ୟାଦ୍ରୁଦନେନ ସ୍ତୁ ଜାୟତେ ।
ପାୟସଂ ଚ ତଥା ମେଷଂ କୁକ୍କୁଟଂ ଗୁଡ ଲୋହିତଂ ।
ରକ୍ତ ବସ୍ତ୍ରଂ ରକ୍ତ ଗନ୍ଧ ରକ୍ତ ପୁଷ୍ପାଣି ବୈ ତଦା ।
ଧୂପଦୀପୌ ହିରଣ୍ୟେନ ଯୁକ୍ତଃ ପୂର୍ଣ୍ଣିକୈ ସ୍ତଥା ।
ଏକବିଂଶସ୍ୟ ମୂଲେ ଚ ଯବକ୍ଷେତ୍ରେ ଦିପେ ବା କ୍ଷିପେତ୍ ।
ମନ୍ତ୍ରଃ— ପ୍ରଗୃହ୍ଣୀଷ୍ୱ ବଳିଂଚେମଂ ବାଳକାନ୍ତେ ମହାଗ୍ରହେ ।
ଶିଶୋ ବିକାରାନ୍ ପ୍ରଶମ କୁମାରସ୍ୟ ପ୍ରିୟପ୍ରଦେ ।

---

ଥର ବାଳକ ଉପରେ ନାଉଁଛାଇ ସନ୍ଧ୍ୟା ସମୟରେ ସିଜୁ ଗଛତଳେ ରଖି ଅର୍ପିବ । ଏପରି ବଳି ଦେଲେ ଦେବୀର ଦୋଷ ଛାଡ଼େ—ପିଲା ଆରୋଗ୍ୟ ପାଏ । ମନ୍ତ୍ର— "ଅଛଥାର୍ଦ୍ଧ୍ୱପୂନନେ ଦେବୀତି" ।

ଏ ଭିତ୍ତିରୁ ବାଳକାନ୍ତା ଦେବୀର ଲକ୍ଷଣ କୁହାଯାଉଅଛି । ଋତୁକାଳରେ ଆପଣା ସ୍ତ୍ରୀ ସଙ୍ଗ କରିବା ପରେ ସ୍ନାନାଦି ନ କରି, ପୁଣି ଋତୁ ଭିନ୍ନ କାଳରେ ଶୌଚହୀନ ହୋଇ ସ୍ତ୍ରୀ ସଙ୍ଗ କରି ଅପବିତ୍ର ହୋଇ ପିଲା ଶେଯରେ ଶୋଇଲେ, ସେହି ସେଯରେ ଶୋଇବା ପିଲାକୁ ବାଳକାନ୍ତା ଦେବୀ ଆକ୍ରମଣକରେ । ସେହି-ହେତୁରେ ପିଲାର ପକ୍ଷାଘାତ ରୋଗ ହୁଏ । ଆଖି ଲାଲ ଦିଶେ । ଏବେ ଏହାର ଶାନ୍ତି ଉପାୟ କୁହାଯାଉଅଛି । କ୍ଷୀର, ମେଣ୍ଢା ରକ୍ତ, କୁକୁଡ଼ା ରକ୍ତ, ଛେଳିରକ୍ତ, ରଙ୍ଗ କନା, ରଙ୍ଗ ଚନ୍ଦନ, ରଙ୍ଗ ଫୁଲ, ଧୂପ, ଦୀପ, ସୁନାପାଣି ପଡ଼ିଥିବା ଜଳ ପୂର୍ଣ୍ଣ କୁମ୍ଭ ଏହି ସମସ୍ତ ଦ୍ରବ୍ୟ ଏକ ମାଟି ପାତ୍ରରେ ରଖି ଏକୋଇଶ ଥର ମନ୍ତ୍ର ପଢ଼ି ସତାଥର ପିଲା ଉପରେ ନାଉଁଛାଇ ସଞ୍ଜବେଳେ ବରଗଛ ମୂଳରେ ଅଥବା କୌଣସି କ୍ଷେତରେ ବଳି ଦେଲେ ଦେବୀର ଦୋଷ ଛାଡ଼ିଯାଏ—ବାଳକ ସୁସ୍ଥ ହୁଏ । ମନ୍ତ୍ର—"ପ୍ରଗୃହ୍ଣୀଷ୍ୱବଳମିତି" ।

✻ ଅଥ ରେବତୀ ଗ୍ରହୀ ଲକ୍ଷଣ ✻

ଭୂଷଣୈ ର୍ବହୁଭିର୍ଯୁକ୍ତଂ ଗନ୍ଧାଦ୍ୟୈ ରଲଙ୍କୃତଂ ।
ବାଳକଂ ରେବତୀ ନାମ ଗ୍ରହୀ ପଞ୍ଚମତେ ତଦା ।
ହରିଦ୍ରା ନେତ୍ର ବର୍ଣ୍ଣଞ୍ଚ ପୀତ ସ୍ଫୋଟ ଶ୍ଚ ଜାୟତେ ।
ଅଗ୍ନି ଦଗ୍ଧାକୃତିଃ ସ୍ଫୋଟୋ ଭବେ ଚ୍ଛର୍ଦ୍ଦିଃ ପୁନଃପୁନଃ ।
ପାୟସଂ ପଳଳଂ ଲାଜା ସକ୍ତବୋ ଗନ୍ଧ ଏବ ଚ ।
ପୁଷ୍ପାଣି ଧୂପ ଦୀପୌ ଚ ମିଷ୍ଟଂ କାଞ୍ଚନ ଗର୍ଭିତଃ ।
ପୂର୍ଣ୍ଣକୁମ୍ଭ ଶ୍ଚ ମଦ୍ୟଂ ବା ଗୋଷ୍ଠେ ନଦ୍ୟାଂ ଚ ନିକ୍ଷିପେତ୍ ।
ମନ୍ତ୍ରଃ— ଶିଶୋ ର୍ବିକାରାନ୍ ଆଦ୍ୟ ରେବତୀ ଚୈବ ମାତୃକେ ।
ପ୍ରଗୃହ୍ଣୀଷ୍ୱ ବଳିଂ ଚେମଂ ସୁନନ୍ଦସ୍ୱ ପ୍ରିୟଭୂଷଣେ ।

✻ ଅଥ ମହାରେବତୀ ଗ୍ରହୀ ଲକ୍ଷଣ ✻

ସନ୍ଧ୍ୟାକାଳେ ଶୟାନଂ ତୁ ଚେଷ୍ଟିତଂ ମୁକ୍ତମୂର୍ଦ୍ଧଜଂ ।
ତଦା ପଞ୍ଚମତେ ବାଳଂ ରେବତୀ ଚ ମହାଗ୍ରହୀ ।

---

ଏଥିଉତ୍ତାରୁ ରେବତୀ ଗ୍ରହୀର ଲକ୍ଷଣ କୁହାଯାଏ । ବହୁତ ଅଳଙ୍କାର ବାଳକକୁ ପିନ୍ଧାଇଲେ ଅଥବା ସୁବାସ ଦ୍ରବ୍ୟ ବାଳକକୁ ଲଗାଇଲେ, ରେବତୀ ନାମ ଦେବୀ ସେହି ପିଲାକୁ ଗ୍ରହଣ କରେ । ଏବେ ତାହାର ଲକ୍ଷଣ କୁହାଯାଉଅଛି । ନେତ୍ର-ମୂତ୍ର-ବିଷ୍ଠା ହଳଦିଆ ଦିଶେ, ମୁହଁରେ ହଳଦିଆ ଫୋଟକା ଜାତହୁଏ, ଦେହରେ ନିଆଁ ଲାଗିବା ଫୋଟକା ପରି ଫୋଟକା ହୁଏ, ସବୁବେଳେ ବାନ୍ତି ହୁଏ । ଏବେ ଏହାର ଶାନ୍ତି ଉପାୟ କୁହାଯାଉଛି । କ୍ଷୀରି, ମାଂସ, ଲିଆ, ଛତୁ, ସୁବାସ ଦ୍ରବ୍ୟ, ସୁଗନ୍ଧ ଫୁଲ, ଧୂପ ଦୀପ, ମିଠାଇ ସୁନାପାଣି ପଡିଥିବା ଜଳପୂର୍ଣ୍ଣ କଳସ ମଦବା, ଏହି ସବୁ ପଦାର୍ଥ ଗୋଟିଏ ମାଟିପାତ୍ରରେ ରଖି ଏକୋଇଶ ଥର ମନ୍ତ୍ର ପଢ଼ି ତିନିଥର ପିଲା ଉପରେ ନଉଁଛାଇ ନେଇ ଗାଈଗୋଠରେ ଅବା ନଈ ତଟରେ ବଳିଦେବ । ଏତିକିରେ ଦେବୀର ଦୋଷ ନାଶ ଯାଏ—ବାଳକ ଆରୋଗ୍ୟ ପାଏ । ମନ୍ତ୍ର—"ଶିଶୋର୍ବିକାରାନିତି" ।

ଏବେ ମହାରେବତୀ ଗ୍ରହୀର ଲକ୍ଷଣ କୁହାଯାଏ । ସଞ୍ଜବେଳେ ଅଣ୍ଟା ହୋଇ ମୁହଁ ନ ଧୋଇ ପିଲାକୁ ଶୁଆଇଲେ ଅଥବା ବାଳମୁକୁଳା ହୋଇ ପିଲା

ଆସ୍ୟଂ ଶୋଷୋ ଭବେତ୍ତସ୍ୟ ଦାହଃ କମ୍ପୋଽଙ୍ଗବନ୍ଧତା ।
କୃଷ୍ଣବର୍ଣ୍ଣି ଶ୍ଚ ଛାଗସ୍ୟେ ବଳଦେଂସ୍ୟଃ ପ୍ରଶାନ୍ତୟେ ।
ତିଳା ଶ୍ଚ ପାୟସଂ ସର୍ପିଃ କୃକଳ୍ପୋ ମେଷ ଏବ ଚ ।
ରକ୍ତବସ୍ତ୍ରଂ ରକ୍ତଗନ୍ଧଂ ପୁଷ୍ପମୂଲଂ ସ କାଞ୍ଚନଂ ।
ବଟସ୍ୟ ମୂଳେ ସନ୍ଧ୍ୟାୟାଂ ପ୍ରଦୋଷେ ନିକ୍ଷିପେଦ୍‌ବଳିଂ ।

ମନ୍ତ୍ରଃ— ରକ୍ତାମ୍ବରଧରେ ଦେବି ରକ୍ତମାଲ୍ୟାନୁଲେପନେ ।
ଶିଶୋ ର୍ବିକାନ୍ତ୍ରଂ ଅଦ୍ୟ ରେବତୀ ତ୍ୱଂ ମହାଗ୍ରହେ ।

❋ ଅଥ ପୁଷ୍ପରେବତୀ ଗ୍ରହୀ ଲକ୍ଷଣ ❋

ଭୂପୃଷ୍ଠେ ଶୟ୍ୟାନଂ ସନ୍ଧ୍ୟାୟାଂ କ୍ରୀଡନ୍ତଂ ପୁଷ୍ପରେବତୀ ।
ଗୃହ୍ଣାତି ଶକ୍ତନ୍ତେ ବାଳଂ ତେନାଙ୍ଗେ ଶୀତତା ଭବେତ୍ ।
ଆସ୍ୟେ ଶୋଷସ୍ତୁ ଦାହସ୍ତୁ କମ୍ପଃ ଏବାଙ୍ଗୁଳୀଷୁ ଚ ।
ତତ୍ରେଷୁ କୃଷ୍ଣବର୍ଣ୍ଣସ୍ତୁ ଦାତବ୍ୟଃ ଶାନ୍ତୟେ ବଳିଃ ।

---

ଶୋଇଲେ ମହା ରେବତୀ ନାମ ଦେବୀ ସେହି ପିଲାକୁ ଆକର୍ଷଣ କରେ । ଏବେ ଏହାର ଲକ୍ଷଣ କୁହାଯାଉଛି । ପ୍ରଥମେ ମୁହଁ ଶୁଖିଯାଏ, ଦେହ ଜ୍ୱଳାକରେ, ଦେହ କମ୍ପ ହୁଏ, ମୁହଁ ମୋଡ଼ି ହୋଇ ଯାଏ, ଦେହ କଳାପଡ଼ି ଯାଏ, ଏହି ସବୁ ଲକ୍ଷଣ ଦେଖାଯାଉ ଥିଲେ ଦେବୀର ବଳିଦାନ ଅବଶ୍ୟ କରିବାକୁ ହୁଏ । ବଳି ବିଧାନ ଏହି—ଛେଳି, ଷୀର, ଘିଅ, କୁକୁଡ଼ା, ମେଣ୍ଢା, ରଙ୍ଗଲୁଗା, ରଙ୍ଗ ଚନ୍ଦନ, ସୁନାପାର୍ଦ୍ଦି ପଡ଼ିଥିବା ଜଳପୂର୍ଣ୍ଣ କୁମ୍ଭ, ଏହି ସମସ୍ତ ଦ୍ରବ୍ୟ ମାଟିପାତ୍ରରେ ରଖି ଏକୋଇଶ ଥର ମନ୍ତ୍ର ପଢ଼ି ଶିଶୁର ପିଲା ଉପରେ ନଉଁଛାଇ ସଞ୍ଜବେଳେ ବରଗଛ ତଳେ ବଳି ଦେଇ ଆସିବ । ଏପରି କଲେ ଦେବୀର ଦୋଷ ଛାଡ଼େ—ବାଳକ ଆରୋଗ୍ୟ ପାଏ । ମନ୍ତ୍ର—"ରକ୍ତାମ୍ବରଧରେଦେବୀତି" ।

ଏଉତ୍ତାରୁ ପୁଷ୍ପରେବତୀ ଗ୍ରହର ଲକ୍ଷଣ କୁହାଯାଉଅଛି । ସଞ୍ଜବେଳେ ଭୂମିତଳରେ ଶୋଇ ଖେଳୁଥିବା ବାଳକକୁ ପୁଷ୍ପରେବତୀ ନାମ ଦେବୀ ଗ୍ରହଣ କରେ । ଏବେ ଏହାର ଲକ୍ଷଣ କୁହାଯାଏ । ପ୍ରଥମରେ ବାଳକର ଅଙ୍ଗ ଶୀତଳ ହୁଏ, ମୁହଁ ଶୁଖିଯାଏ, ଦେହରେ ଦାହ ଜାତ ହୁଏ, ହାତର ଆଙ୍ଗୁଠି ଗୁଡ଼ିକ କମ୍ପେ,

ମଧୁ ଯୁକ୍ତଂ ପାୟସଂ ଚ ଗନ୍ଧପୁଷ୍ପାଣି ବାସସୀ ।
ଧୂପଦୀପୌ ଦ୍ୱିଭକ୍ଷ୍ୟେଣ ଯୁକ୍ତଃ ଦୃଷ୍ଟିଦଷ୍ଟ ସ୍ତଥା ।
ସପୁଷ୍ପାସ୍ଥାନେ କ୍ୱାପି ଦଦ୍ୟାଂ ମନ୍ତ୍ରେଣ ନାଡିଦେହି ।
ମନ୍ତ୍ରଃ— ପୁଷ୍ପାଖ୍ୟେ ରେବତୀ ଦେବୀ ତୃପ୍ତୀଭୂତ୍ୱା ବଳିଂ ହି ମଂ ।
ବାଳକସ୍ୟ ସୁଖଂ ଶିଘ୍ରଂ ପ୍ରଯଚ୍ଛ ତ୍ୱଂ ବରାନନେ ।

* ଅଥ ଶୁଷ୍କରେବତୀ ଗ୍ରହୀ ଲକ୍ଷଣ *

ଭୂମୌ ନିପତିତଂ ବାଳଂ ରୁଦନ୍ତଂ ଛର୍ଦ୍ଦିତଂ ତଥା ।
ଅଙ୍ଗୋଳଚ ଘାଙ୍ଗଂ ଚ ଗୃହ୍ଣୀୟାତ୍ ଶୁଷ୍କରେବତୀ ।
ତତୋ ଜ୍ୱର ମୁଖେ ଶୋଷୀ ହୃଚ୍ଛୋଷ୍ୟ ପି ଚ ଶୂଳ୍ୟପି ।
ଶିରେ ରୋଗାଭିଭୂତସ୍ତ ବଂଶାତ୍ରୈନ ଯୁତୋ ଭବେତ୍ ।
ମୂଦ୍ଗାନ୍ନଂ ଶ୍ୱେତ ପୁଷ୍ପାଣି ଶ୍ୱେତବସ୍ତ୍ରଂ ଚ ଚନ୍ଦନଂ ।
ଧୂପଦୀପୌ ଘଟଂ ଚୂତ ବୃକ୍ଷମୂଳେ ବଳିଂ ହରେତ୍ ।

---

ନଖ କଳା ହୋଇଯାଏ ଏପରି ଅବସ୍ଥାରେ ପୁଷ୍ପରେବତୀ ଦେବୀର ବଳିଦାନ କରିବା ନିତାନ୍ତ ଆବଶ୍ୟକ । ମଧୁ, କ୍ଷୀର, ସୁବାସଫୁଲ, ଧୋବକନା, ରଙ୍ଗକନା ଧୂପ, ଦୀପ, ସୁନାପାର୍କା ପକାଇ ଜଳ ପୂର୍ଣ୍ଣକୁମ୍ଭ । ଏହି ସବୁ ପଦାର୍ଥ ମାଟି ପାତ୍ରରେ ରଖି ମନ୍ତ୍ରରେ ମନ୍ତ୍ରିତ କରି ଟେକଥର ପିଲା ଉପରେ ବୁଲାଇ ଯେଉଁଠାରେ ଫୁଲବାଡ଼ି ଥିବ, ସେଠାରେ ବଳି ଦେଇ ଆସିବ । ଏପରି କଲେ ପିଲା ଭଲ ହୁଏ—ଦେବୀର ଦୋଷ ଛାଡ଼େ । ମନ୍ତ୍ର—"ପୁଷ୍ପାଖ୍ୟେରେବତୀତି" ।

ଏବେ ଶୁଷ୍କରେବତୀ ଗ୍ରହୀର ଲକ୍ଷଣ କୁହାଯାଉଛି । ପୃଥିବୀ ଉପରେ ପଡ଼ି ଯେଉଁ ବାଳକ ରଡ଼ି କରୁଥାଏ, ପୁଣି ବାନ୍ତି କରୁଥାଏ, ସେହି ପିଲାକୁ ପାଣିରେ ଧୂଆଧୋଇ କରି ଶୁଦ୍ଧ ନକଲେ, ଏହି ପିଲାକୁ ଶୁଷ୍କରେବତୀ ଦେବୀ ଗ୍ରହଣକରେ । ଏବେ ଏହାର ଲକ୍ଷଣ କୁହାଯାଏ । ପ୍ରଥମେ ପିଲାକୁ ଜ୍ୱର ହୁଏ, ମୁହଁ ଶୁଖେ, ବହୁତ ତୃଷା ହୁଏ, ପେଟରେ ଶୂଳ ଜାତହୁଏ, ମୁଣ୍ଡ ବ୍ୟଥାହୁଏ ଓ ଅଜୀର୍ଣ୍ଣ ହୁଏ । ଏଥିପାଇଁ ଏବେ ଉପାୟ କୁହାଯାଉଛି । ମୁଗ, ଗୁଡ଼ଜଳ, ଧୋବଫୁଲ ଧୋବକନା, ଧୋବ ଚନ୍ଦନ, ଧୂପ, ଦୀପ, କଳସକୁମ୍ଭ । ଏହି ସବୁ ପଦାର୍ଥ ମାଟିପାତ୍ରରେ

ମନ୍ତ୍ରଃ — ଶୁଷ୍କାଙ୍ଗ ରେବତୀ ଦେବୀ ପ୍ରେତରୂପେ ଯଶସ୍ୱିନୀ ।
କରାଳ ବଦନେ ଘୋରେ ପ୍ରଗୃହ୍ଣୀଷ୍ୱ ବଳିଂ ତ୍ୱିମଂ ।

✱ ଅଥ ଶକୁନୀ ଗ୍ରହୀ ଲକ୍ଷଣ ✱

ଉଚ୍ଛିଷ୍ଟ ଭୋଜନଂ ଦେବାଳୟେ ମୂତ୍ରାଦି କାରଣଂ ।
ଶକୁନୀ ଗ୍ରହ ଗୃହ୍ଣାତି ତତୋ ଜାଗନ୍ତି ବୈ ନନି ।
ମୁଖେ କଣ୍ଠେ ଗୁଦେ ଚୈବ ବ୍ରଣୋଽଥାସ୍ରାବଭାକ୍ ଭବେତ୍ ।
ଜ୍ୱର ତୃଷ୍ଣା ଛର୍ଦ୍ଦି ବାତରୋଗୀ ଭବେତ ବାଳକଃ ।
ଆମ ମାଂସଂ ପକ୍ୱମାଂସଂ ହରିଦ୍ରାନ୍ନଂ ପୟୋ ଘୃତଂ ।
ତିଳପିଷ୍ଟଂ ଫଳଂ ଚୈବ ବସ୍ତ୍ରଗନ୍ଧାଦିକଂ ତଥା ।
ଦ୍ରବ୍ୟ ସର୍ବତଃ କୁମ୍ଭଃ ଶ୍ମଶାନେ ନିକ୍ଷିପେଦ୍ବଳିଂ ।

---

ରଶ୍ମି ଏକୋଇଶ ଥର ମନ୍ତ୍ର ପଢ଼ି, ତିନିଥର ପିଣ୍ଡ ଉପରେ ଲୁଣିଗୁଳ ଆମ୍ବଗଛ ତଳରେ ନେଇ କେଇଦେଲେ ବାଳକର ରୋଗ ଛାଡ଼ିଯାଏ - ରେବତୀଙ୍କ ଦୋଷ ଦୂର ହୁଏ । ମନ୍ତ୍ର—"ଶୁଷ୍କାଙ୍ଗରେବତୀ" ।

ଏ ଉତ୍ତାରୁ ଶକୁନୀ ଗ୍ରହର ଲକ୍ଷଣ କୁହାଯାଉଛି । ଦେଉଳ ଉଚ୍ଛିଷ୍ଟ ଦେବତା ସ୍ଥାନରେ ଅଇଁଠା ଖାଇଲେ ଅଥବା ମଳ ମୂତ୍ର ତ୍ୟାଗ କରିଲେ, ପିଲାକୁ ଶକୁନୀଗ୍ରହ ଗ୍ରହଣ କରେ । ସେହି ଏହାର ଲକ୍ଷଣ କୁହାଯାଏ । ସବୁବେଳେ ପିଲା ଶୋଏ ନାହିଁ, ପିଲାର ମୁହଁରେ, ତୋଣ୍ଟିରେ, ଗୁହ୍ୟରେ ଘା ବାହାରେ, ଅଳ୍ପ ଅଳ୍ପ ପ୍ରବୃତ୍ତି ହୁଏ, ଜ୍ୱର ହୁଏ, ବଡ଼ ତୃଷା ହୁଏ, ବାନ୍ତିକରେ. ବାତରୋଗ ମଧ୍ୟ ଦେଖାଯାଏ । ଏହି ଲକ୍ଷଣମାନଙ୍କରୁ ଶକୁନୀ ଦେବୀର ଦୋଷ ଜାଣିବାକୁ ହୋଇଥାଏ । ସେବେ ଏହାର ବଳି ବିଧାନ କୁହାଯାଉଅଛି । କଞ୍ଚା ମାଂସ, ସିଝା ମାଂସ, ହଳଦିଆ ଭାତ, ଦୁଧ, ଘିଅ, ରଶିପିଠା ଫଳ, ଧୋବକେନା, ଧୋବ-ଫୁଲ, ପତାକା, ଧୂପ, ସୁନାପାଣି ପଡ଼ିଥିବା ଜଳକୁମ୍ଭ, ଏହି ସବୁ ଜିନିଷ ଗୋଟିଏ ମାଟି ପାତ୍ରରେ ରଖିବ । ଏକୋଇଶ ଥର ମନ୍ତ୍ର ପଢ଼ି ତିନିଥର ବାଳକ ଉପରେ ନଉଁଛାଇ ମଶାଣିରେ ନେଇ ବଳି ଦେଇ ଆସିବ । ଏହା କଲେ ଭଲ ହେବ ।

ମନ୍ତ୍ରଃ— ପ୍ରଗୃହ୍ଣୀଷ୍ୱ ବଳିଂ ଚେମଂ ଶକୁନ୍ୟାଖ୍ୟେ ମହାଗ୍ରହେ ।
ଶିଶୋର୍ବିକାରନ୍ ଖାଦ୍ୟ ସୁଭଗେ କାମରୂପିଣି ।

✽ ଅଥ ଶିଶୁମୁଣ୍ଡିକା ଗ୍ରହୀ ଲକ୍ଷଣ ✽

ନିତ୍ୟକର୍ମ ବିସ୍ନାତାନାଂ ପୋଷିକାଣାଂ ଚ ରକ୍ଷିଣାଂ ।
ଜନ୍ମାନ୍ତରେ ସପ୍ତମେ ତୁ ବାଳକଂ ଶିଶୁମୁଣ୍ଡିକା ।
ତଦା ରୋଦନ ପାଣୀ ରୁ ପାଦୌ ସଂକ୍ଷିପ୍ୟ କମ୍ପତେ ।
ଆମଜ୍ୱରଃ ଅନିଦ୍ରଶ୍ଚ ଭକ୍ତବଞ୍ଛାର୍ଦ୍ଧୌ ଚ ଲେସ୍ତତଃ ।
ହରିଦ୍ରାନ୍ନଂ ତିଲାନ୍ନଂ ଚ ପିଷ୍ଟଂ ଗୃ ଧୂପଧୂପକା ।
ସର୍ପି ମଧୁ ଦଧି କ୍ଷୀରଂ ଗନ୍ଧପୁଷ୍ପାଣି ବାସରୀ ।
ଧୂପଦୀପୌ ସୁଗନ୍ଧେନ ଯୁକ୍ତଃ ପକ୍ୱରମ୍ଭଃ ସ୍ତଥା ।
ନାଗଙ୍ଗକେ ବଟେ ହରଣେ ନୈବେଦ୍ୟମନ୍ତ୍ରତୋ ବଳିଂ ।

ମନ୍ତ୍ରଃ— ଗ୍ରହ୍ଣଂତୁ ସ୍ୱରୂପା ଚ ଭବସି ଶିଶୁମୁଣ୍ଡିକେ ।
ଶିଶୋର୍ବିକାରନ୍ ଖସ୍ୱ ଚଣ୍ଡେ ଦେ ଚଣ୍ଡ ଚଣ୍ଡମେ ।

---

ପୂଜା କଲେ ବାଳକ ଆରୋଗ୍ୟ ପାଏ—ଶକୁନି ଦେବୀଙ୍କ ଦୋଷ ଛାଡ଼ିଯାଏ ।
ମନ୍ତ୍ର—"ପ୍ରଗୃହ୍ଣୀଷ୍ୱ ବଳିମିତି" ।

ଏ ଉତ୍ତାରୁ ଶିଶୁମୁଣ୍ଡିକା ଦେବୀର ଲକ୍ଷଣ କୁହାଯାଉଛି । ଯେଉଁ ନର ବା ନାରୀ ନିତ୍ୟକର୍ମ କରେ ନାହିଁ, ଧାଈମାନଙ୍କୁ ପୋଷି ରଖେ, ଏହାର ବାଳକଙ୍କୁ ଜନ୍ମାନ୍ତରେ ଶିଶୁମୁଣ୍ଡିକା ଦେବୀ ଗ୍ରହଣ କରନ୍ତି । ସେ ଏହାର ଲକ୍ଷଣ କୁହାଯାଏ । ବାଳକ ବହୁତ କାନ୍ଦେ, ହାତ ଗୋଡ଼ ବାନ୍ଧିହୋଇ ଥରେଇ କମ୍ପାଏ, କଟ ଜ୍ୱର ହୁଏ, ଅନିଦ୍ରା ରହେ, ବାନ୍ତି କରେ, ଆଳସ୍ୟ ହୁଏ, ଏହି ଲକ୍ଷଣ ଯୋଗୁଁ ଶିଶୁମୁଣ୍ଡିକା ଦେବୀର ଦୋଷ ବୋଲି ଜଣାଯାଏ । ଏବେ ଏହାର ବଳିବିଧାନ କୁହାଯାଉଛି । ହଳଦିଆ ଭାତ, [ ଖେଚେଡ଼ି ] ସନ୍ନି ପିଠା, ଫୁଲ, ଘିଅ, ମହୁ, ଦହି, ଦୁଧ, ସୁବାସ ଫୁଲ, ଧୋବ କଦଳୀ, ରଙ୍ଗ କଦଳୀ, ଧୂପ, ଦୀପ ମିଠାପଦାର୍ଥ ସ୍ନାନ ଯାଇଁ ପଡ଼ିଥିବା ଜଳକୁମ୍ଭ, ଏ ସବୁ ପଦାର୍ଥ ଗୋଟିଏ ମାଟିପାତ୍ରରେ ରଖି ଏକୋଇଶ ଥର ମନ୍ତ୍ର ପଢ଼ି, ସାତ ଥର ପିଲା ଉପରେ ନିଉଁଛାଇ ବଟବୃକ୍ଷ

ଅଥ ସାମାନ୍ୟତୋ ଗ୍ରହାବିଷ୍ଟବାଳକସ୍ୟ ଚେଷ୍ଟାଦର୍ଶନ
ସ୍ନାନ ଧୂପ ମନ୍ତ୍ରାଃ କଥ୍ୟନ୍ତେ—

ନଖ ଦନ୍ତ ବିକାରଃ ସ୍ୟାନ୍ନିଦ୍ରାନାଶୋ ଽଥବା ଭବେତ୍ ।
ଭୟୋଦ୍ୱେଗୀ ଚ ଦୁର୍ଗନ୍ଧୀ ବହୁଚେଷ୍ଟୋ ବଳାନ୍ୱିତଃ ।
ବାଳୋ ବାଳଗ୍ରହାବିଷ୍ଟ ସ୍ତସ୍ୟ ସ୍ୟାଚ୍ଚ ପ୍ରତିକ୍ରିୟା ।
ଦୂର୍ବା ସଲ୍ଲକୀ ବିଷମଚ୍ଛଦ ତ୍ୱକ୍ ପ୍ରୋଦ୍ଧର୍ଷିନୀ ହନ୍ତି ଶିଶୁ ଗ୍ରହାର୍ତ୍ତିଂ ।
ସପ୍ତଚ୍ଛଦାଶ୍ୱତ୍ଥ ମଧୂକଶୈଳୁପତ୍ରୈଃ କ୍ୱଥାମ୍ବୁଃ ସ୍ନପନା ଚ ଶୀତାତ୍ ।
ବଂଶାନ୍ନଗ୍ନନ୍ତ ସଂଯୁତଂ ସଲଶୁନଂ ସାରିଷ୍ଟପତ୍ରଂ ଧୃତଂ ।
ନିର୍ମାଲ୍ୟଂ ନରକେଶ ସର୍ପିରଗୁରୁଂ ଗୋଷ୍ଠୀଚ ରକ୍ଷା ଚ ରୁଃ ।

---

ନଈ ତଡ଼ରେ ଥିବା ବରଗଛ ମୂଳରେ ଅଥବା ବଣରେ ନେଇ ବଳି ଦେଲେ ବାଳକର ଶରୀର ସୁସ୍ଥ ହୁଏ—ଶିଶୁମୁଣ୍ଡିକା ଦେବୀର ଦୋଷ ଛାଡ଼ିଯାଏ । ମନ୍ତ୍ର— "ସ୍ୱଲଙ୍କୃତସ୍ୱରୂପାଚେତ" ।

—○—

ଏବେ ସାମାନ୍ୟ ଭାବରେ ଗ୍ରହଦ୍ୱାରା ଆବିଷ୍ଟ ବାଳକର ଚେଷ୍ଟା,
ସ୍ନାନ, ଧୂପ, ମନ୍ତ୍ର, ଏ ସବୁ କୁହାଯାଉଛି ।

ଯେଉଁ ବାଳକର ନଖରେ ବିକାର ହୁଏ, ଆଉରି ଦାନ୍ତରେ ବିକାର ହୁଏ ନିଦ୍ରା ହୁଏନାହିଁ, ଭୟ ଲାଗେ, ମନ ଉଦ୍ବେଗ ରହେ, ଶରୀରରେ ଦୁର୍ଗନ୍ଧ ଜାତ ହୁଏ, ଅନେକ ପ୍ରକାର ଚେଷ୍ଟାକରେ, ବଳ ଅଧିକ ହୁଏ, ଏହି ବାଳକକୁ ଗ୍ରହାବିଷ୍ଟ ବୋଲି ଜାଣିବାକୁ ହୁଏ । ଏବେ ଏହାର ପ୍ରତିକ୍ରିୟା ଲେଖାଯାଉଅଛି । ଦୁବ, କଣ୍ଟକୀ, ନିମ୍ବପତ୍ର, ସପ୍ତଛଦପତ୍ର, ଅଶ୍ୱତ୍ଥପତ୍ର, ମହୁଲପତ୍ର, ଶାଳୁଆପତ୍ର, ଏହି ଔଷଧିମାନଙ୍କର ପାଚନ ଜଳରେ ପିଲାକୁ ସ୍ନାନ କରାଇଲେ ବାଳକର ଗ୍ରହପୀଡ଼ା ନାଶଯାଏ—ବାଳକ ଆରୋଗ୍ୟ ପାଏ ।

ଏବେ ବାଳକର ଶାନ୍ତି ସକାଶେ ଧୂପ ବିଧି ଲେଖାଯାଏ । ପ୍ରଥମରେ ବାଉଁଶ-ବକଲ, ତଗର, ରଶୁଣ, ନିମ୍ବପତ୍ର, ଗାଈ-ଘିଅ, ଏହା ସବୁ ଏକତ୍ର କରି ଧୂ

ସିଦ୍ଧାର୍ଥଂ ଜତୁ ନମପକେ ସଦ୍ଧୃତଂ ବଂଶତ୍ୱଗା ଜ୍ୟା ନ୍ୱିତଂ ।
ଧୂପାନାଂ ତ୍ରୟମେତ ଦାଶୁ ସକଳାନ୍ ବାଳଗ୍ରହାନ୍ନାଶୟେତ୍ ।

ମନ୍ତ୍ରଃ— ପ୍ରଣବଃ ଶଙ୍ଖଶବ୍ଦେନ ରମୋଦଞ୍ଚ ବଦେ ତତଃ ।
ଖଗେଶ୍ୱର ତତୋଲ୍ଲାକର୍ଷଣଂ କୁରୁ ସମୁଦେତ୍ ।
ବହ୍ନି ଜାୟା ବଧିମନ୍ତ୍ରୋ ବାଳେପନ ବଧୌସ୍ମୃତଃ ।

ମନ୍ତ୍ରଃ— ଅଥ ମନ୍ତ୍ରଂ ପ୍ରବକ୍ଷ୍ୟାମି ହ୍ୟଭିଷେକ କରଂ ବରଂ ।
ପ୍ରଣବଂ ସର୍ବ ସିଦ୍ଧାନ୍ତେ ମାତରିତ ପଦଂ ବଦେତ୍ ।
ଇନଂ ଗ୍ରହଂ ଫଣ୍ଡରରୁ ହୁଂବେଦସ୍ୱ ଚ ବେଦସ୍ୱ ।
ଷ୍ଟୋଟୟ ଦ୍ୱିତୟଂ ଗୃହ୍ଣ ଦ୍ୱୟ ମାମର୍ଦ୍ଦୟ ଦ୍ୱୟଂ ।
ଶୀଘ୍ରଂହନ ଦ୍ୱୟଂ ପ୍ରୋକ୍ତ ମେବଂ ସିଦ୍ଧୋ ବଦେତ୍ତତଃ ।
ରୁଦ୍ରାଜ୍ଞାପୟତି ସ୍ୱାହା ସ୍ନାନେ ଚୈଷ ବିଧିଃ ସ୍ମୃତଃ ।
ବାଳକସ୍ୟ ଶିର ସ୍ପୃଷ୍ଟ୍ୱାଞ୍ଜସା ସର୍ବଗ୍ରହାନ୍ ହରେତ୍ ।

---

ଦେବ । ଦ୍ୱିତୀୟରେ ଶିବନିର୍ମାଲ୍ୟ ଫୁଲ, ମନୁଷ୍ୟ ମୁଣ୍ଡର ବାଳ, ଗାଈଘିଅ, ଗାଈ କ୍ଷୀର, ରାଳ, ଜଉ ଏହା ସବୁ ଧୂପ ଦେବ । ତୃତୀୟରେ ରାଳ, ଜଉ, ନିମ୍ବ-ପତ୍ର, ବାଉଁଶ ବକଳ, ଗାଈଘିଅ ଏହା ସବୁ ଧୂପ ଦେବ । ଏହି ତିନି ପ୍ରକାର ଧୂପ ବାଳକକୁ ଦେଲେ ସବୁପ୍ରକାର ବାଳଗ୍ରହ ଦୋଷ ନଷ୍ଟ ହୋଇଯାଏ, ବାଳକ ସୁସ୍ଥ ହୁଏ । ମନ୍ତ୍ରଃ— "ଓଁ ଶଙ୍ଖଶବ୍ଦେନ ରମୋଦଞ୍ଚଃ ଖଗେଶ୍ୱରଲ୍ଲାକର୍ଷଣଂ କୁରୁସ୍ୱାହା ।"

ଏଉତ୍ତାରୁ ବାଳକକୁ ଅଭିଷେକ କରାଇବା ପାଇଁ ଶ୍ରେଷ୍ଠ ମନ୍ତ୍ରମାନ କୁହାଯାଉଅଛି ।

"ଓଁ ସର୍ବସିଦ୍ଧାନ୍ତେ ମାତରିନଂ ଗ୍ରହଂ ଫଣ୍ଡର ହୁଂ ବେଦସ୍ୱ ବେଦସ୍ୱ ଷ୍ଟୋଟୟ ଷ୍ଟୋଟୟ ଗୃହ୍ଣ ଗୃହ୍ଣ ଆମର୍ଦ୍ଦୟ ଆମର୍ଦ୍ଦୟ ଶୀଘ୍ରଂ ହନ ହନ ଏବଂ ସିଦ୍ଧୋ ରୁଦ୍ରା-ଜ୍ଞାପୟତି ସ୍ୱାହା ।" ଏହି ମନ୍ତ୍ରରେ ଗ୍ରହପୀଡ଼ିତ ବାଳକକୁ ସ୍ନାନ କରାଇବ ଏବଂ

ମନ୍ତ୍ରଃ— ଧୂପଃ

ଖ୍ଂ ଖ୍ଦର୍ନଂ ସମୁଚ୍ଚାର୍ଯ୍ୟ ଖଂହ୍ରଂଫଟ୍ ବହ୍ନିବଲ୍ଲଭ ।
ନବାର୍ଣ୍ଣୋଽଯ୍ଂ ସମାଖ୍ୟାତୋ ଧୂପନେ ସର୍ବକର୍ମସୁ ।

ମନ୍ତ୍ରଃ — ଯନ୍ତ୍ରଧାରଣେ

ରକ୍ଷ ରକ୍ଷ ମହାଦେବ ନୀଳଗ୍ରୀବ ଜଟାଧର ।
ଗ୍ରହୈସ୍ତୁ ସହିତୋ ରକ୍ଷ ମୁଞ୍ଚ ମୁଞ୍ଚ କୁମାରକଂ ।

ବିଧାନଂ

ଭୂର୍ଜପତ୍ରେ ଇମଂ ଲିଖ୍ୟ ଗୁଟିକାଂ କୃତ୍ୟ ବନ୍ଧୟେତ୍ ।
ଭୁଜେ ବାଳସ୍ୟ ରକ୍ଷାର୍ଥଂ ସର୍ବଗ୍ରହହରଂ ପରଂ ।

ଅପରେ ମନ୍ତ୍ରଃ—

ପ୍ରଣବଂ ମୂକମୂକେତି ଏକ ଏକ ଧ୍ରୁବ ଦ୍ୱୟଂ ।
ଅଜଦ୍ୱୟଂ ଚ ଆଗଚ୍ଛ ବାଳକଂ ଚ ଦ୍ୱୟଂ ବଦେତ୍ ।
ବହ୍ନିଜାୟା ବିଧିର୍ମନ୍ତ୍ରଃ ସର୍ବଗ୍ରହ ବିମୋଚନଃ ।
ଜପେ ହୋମେ ତର୍ପଣେ ଚ ବାଳକସ୍ୟ ସୁଖାବହଃ ।

ଯନ୍ତ୍ରୋଦ୍ଧାର

ତାରଂ ଚ ଶକ୍ତି ଲୁଯୁଗାନ୍ୱିତ ବହ୍ନିଜାୟା କୋଣେଷୁ ଷଟ୍‌ସୁ ପରଲିଖ୍ୟ ଷଡ଼କ୍ଷରାଂଶ୍ଚ ।
ବୃତ୍ତିତ୍ରୟେଣ ପରିବୀତମିଦଂ ହି ଯନ୍ତ୍ରଂ ବଦ୍ଧଂ ତଦାଶୁ ଶିଶୁବେଦନ ମୁଷ୍ଟିଶୋଭ ।

---

ପିଲାର ମୁଣ୍ଡରୁ ଗୋଡ଼ି ଏହି ମନ୍ତ୍ର ପଢ଼ିଲେ ଗ୍ରହଦୋଷ ଦୂର ହୋଇଯାଏ । "ଖ୍ଂଖ୍ଦର୍ନଂ-ଖଂହ୍ରଂ ଫଟ୍ ସ୍ୱାହା ।" ଏହି ନବାକ୍ଷର ମନ୍ତ୍ରରେ ପିଲାକୁ ଧୂପ ଦେବ । ଆଉରି ମଧ୍ୟ ଯେଉଁ ମନ୍ତ୍ର "ରକ୍ଷ ରକ୍ଷ ମହାଦେବ" ବୋଲି ଅଛି, ତାହା ଭୂର୍ଜପତ୍ରରେ ଗୋରଚନାରେ ଲେଖି ପିଲାର ରକ୍ଷାପାଇଁ କଣ୍ଠରେ ବାନ୍ଧିଲେ ବାଳକର ସର୍ବ ଗ୍ରହ ଦୋଷ ଶାନ୍ତହୁଏ । ଆଉରି ମଧ୍ୟ "ଓଁ ମୂକମୂକ ଏକଏକ ଧ୍ରୁବଧ୍ରୁବ ଜୟଜୟ ଆଗଚ୍ଛ ଆଗଚ୍ଛ ବାଳକଂ ଠଃ ଠଃ ସ୍ୱାହା" ଏହି ମନ୍ତ୍ରକୁ ଜପ କଲେ, ହୋମ କଲେ, ତର୍ପଣ କଲେ, ବାଳକର ସର୍ବ ଗ୍ରହ ଦୋଷ ନାଶଯାଏ—ବାଳକ ସୁସ୍ଥହୁଏ ।

ଷଟ୍‌କୋଣ ମଧ୍ୟେ ଚ ବାଲକଶ୍ୟମନ୍ତ୍ରଂ ନାମାନ୍ବିତଂ ପୂର୍ଣ୍ଣ ଶଶାଙ୍କଯୁକ୍ତଂ ।
ଷଟ୍‌କୋଣ ମଧ୍ୟେରୁ ଷଡ଼ଷରାଣି ଚନ୍ଦ୍ରାନ୍ବିତା ନ୍ୟେବ ମିତଂ ଲିଖେତନ୍ଧି ।




"ଓଁ ହ୍ରୀଁ ଲୁଲୁ ସ୍ୱାହା ।" ଏହି ଛ ଅକ୍ଷର ମନ୍ତ୍ରକୁ ଷଟ୍‌କୋଣ ଯନ୍ତ୍ରର ଛ କୋଣରେ ଗୋରୋଚନା ବା କୁଙ୍କୁମରେ ଲେଖିବ । ଷଟ୍‌କୋଣ ଯନ୍ତ୍ର ଉପରେ ତିନି ଆବର୍ତ୍ତି କରିବ । ଏହା ମଧ୍ୟରେ ପୂର୍ଣ୍ଣ ଚନ୍ଦ୍ରାକାର ବୃତ୍ତ ଲେଖି, ତହିଁରେ ମନ୍ତ୍ର ଲେଖିବ ଏବଂ ପିଲାର ନାମ ତହିଁରେ ଲେଖିବ । ଏହି ଯନ୍ତ୍ର ଲେଖି ବାଳକର କଣ୍ଠରେ ବାନ୍ଧିଲେ, କାନ୍ଦୁଣି ବନ୍ଦ ହୁଏ, ଦେହ ସୁସ୍ଥ ରହେ ।



# ବିବିଧ ଚିକିତ୍ସା



ପ୍ରିୟଙ୍ଗବଷ୍ଟ ପିପ୍ପଲ୍ୟଂ ମଧୁନା ଲେହୟେଚ୍ଛିଶୁଂ ।
ଷୀରମଜ୍ଜଂ ନିହନ୍ତ୍ୟାଶୁ ବିଡ଼ଙ୍ଗେନ ଯୁତଂ କ୍ରିମୀନ୍ ।
ତୈଳସ୍ୟ ଭାଗମେକଂ ମୂତ୍ରସ୍ୟ ଦ୍ୱୌ ଦ୍ୱୌ ଚ ଶିମ୍ବିଦଳ ରସସ୍ୟ ।
କ୍ଷୀରଂ ଚତୁ ସ୍ତୁର୍ଗୁଣ ମେବଂ ଦତ୍ତ୍ୱା ପଚେ ତ୍ତୈଲଂ ।
ତୈଳାଭ୍ୟଙ୍ଗଃ ସତତଂ ରୋଗମନାସକାଖ୍ୟ ମପହରତି ।
ଅର୍କଜ ଦୁଗ୍ଧକ ମାକ୍ଷିକରୋମାଣ୍ୟାଦାୟ କେଶରାଜସ୍ୟ ।
ସ୍ୱରସେନାକ୍ତୋ ବସ୍ତ୍ରୈଃ କୃତ୍ୱା ବର୍ତ୍ତିଂ ଚ ତୈଳାକ୍ତାଂ ।
ତଜ୍ଜାତକଜ୍ଜଳ ଲିପ୍ତିତ ଲୋଚନଯୁଗଲୋ ଽପ୍ୟଲଙ୍କୃତୋ ବାଳଃ ।
କଷ୍ଟଂ ମନାସକ ରୋଗଂ ମୁଞ୍ଚତି ଭୂତାଦ୍ୟକଂ ଗୃତି ।
ଲ୍ୟକାଞ୍ଜନ ସିତା ବ୍ରାହ୍ମୀ ମଧୁ ଶୁକ୍ଳକ ଚୂର୍ଣ୍ଣିତୈଃ ।
ବାଳସ୍ୟ ଲେହୋ ମଧୁନା ଦେୟଃ ସର୍ବଜ୍ୱରାପହଃ ।

---

ପ୍ରିୟଙ୍ଗୁ, ପିପ୍ପଳି, ଏହାର ଚୂର୍ଣ୍ଣ ମହୁ ସହିତ ଚଟାଇଲେ ସ୍ତନ୍ୟ ରୋଗ ଛାଡ଼ିଯାଏ । ତଥା ବିଡ଼ଙ୍ଗ ଚୂର୍ଣ୍ଣ ମହୁ ସହିତ ଚଟାଇଲେ ବାଳକର କ୍ରିମିରୋଗ ଦୂର ହୁଏ । ତେଲ ଏକ ଭାଗ, ଗାଈମୂତ ଦୁଇ ଭାଗ, ଶିମୂଦଳ ରସ ଦୁଇ ଭାଗ, ଛେଳି ଷୀର ଚାରି ଭାଗ, ଏହା ସବୁ ଏକତ୍ର ପାକ କରିବ । ଏହି ତେଲ ମର୍ଦ୍ଦନ କଲେ ପିଲାର ଅନାସକ ରୋଗ ଛାଡ଼ିଯାଏ । ଅରଖ ଷୀର, ମେଣ୍ଢାଲୋମ, ଭୃଙ୍ଗରାଜ ରସରେ ମିଶାଇ କନାରେ ବୋଳିବ । ଏହି କନା ବଳିତା କରି ତେଲରେ ବୁଡ଼ାଇବ । ଏହି ବଳିତାର କଜ୍ଜଳ ଆଖିରେ ଲଗାଇଲେ ଅନାସକ (ଅନାସି) ରୋଗ ଓ ଭୂତାଦିଜନିତ ସମ୍ପୂର୍ଣ୍ଣ ଦୋଷ ଛାଡ଼ିଯାଏ । ଲିଆ, ରସାଞ୍ଜନ, ଶୁକ୍ଳ ଶାକର, ବ୍ରାହ୍ମୀ ଶାକ ଏହା ସବୁ ଏକତ୍ର ପେଷଣ କରି ମହୁ ସହିତ ବାଳକକୁ ଚଟାଇଲେ ସବୁ ପ୍ରକାର ଜ୍ୱର ଛାଡ଼ିଯାଏ ।

### ❋ ଟୈରକାଦି ଚିକିତ୍ସା ❋

ହୃଦ୍ବୈକଲ୍ୟଦାହ ଶରଣଂ ବମନଂ ତଥୈବ ଆଧ୍ମାନ ଘୂର୍ଣ୍ଣିକରୁଜଞ୍ଚ ଶିଶୋର୍ବିଧାୟ ।
ଯଃ ଶ୍ୱାସମାସ ପରିରକ୍ଷିତ ଜୀବ ଯୋଗୀ ରୋଗୋ ଭୟଭ୍ରୂକୃତଃ ସ ହି ରୋଚନାମା ।
ଶୀର୍ଷାଙ୍ଘ୍ରି ହସ୍ତତଲୟୋଃ ଶିତକୁକ୍କୁଟାଣ୍ଡମଜ୍ଜା ଘୃତୋ ହରତି ଟୈରକରୋଗମାଶୁ ।
ଏବଂ ନ ଶାମ୍ୟତି ଶିଶୁଂ ପରିପାଳୟେତ୍ତଂ ପୂତାମ୍ବୁନା କଳବତ୍ୟେଷୁ ମିଦଂ ଜଲେନ ।

ଭଦ୍ରମୁସ୍ତାଭୟା ନିମ୍ବ ପଟୋଳାଟଳକୈଃ କୃତଃ ।
କ୍ୱାଥଃ ସୋଷ୍ଣୋ ଽମୁ ବାଳାନା ମଶେଷ ଜ୍ୱର ନାଶନଃ ।
କଫକୋପ ଜ୍ୱରେ ଽରୁଚ୍ୟାଂ ପ୍ରତିଶ୍ୟାୟ ଶ୍ୱାସକାସକେ ।
ଚୂର୍ଣ୍ଣିତଙ୍କ୍ରୀ ପଞ୍ଚକୋଲଂ ଲିହ୍ୟାନ୍ମଧୁଘୃତାପ୍ଲୁତଂ ।

### ❋ ଅହଣ୍ଡ୍ରିକା ଚିକିତ୍ସା ❋

ଯେ ମଗ୍ରହଣେ ବର୍ଦ୍ଧବକ୍ରେକଶିଖା ମୂଳମୁଦ୍ଧୃତଂ ବଦ୍ଧା
ଜଘନେ ଽଥ କଣ୍ଠରଜ୍ଜ୍ୱାଂ ଯପଯୃତ ବାଳାନା ମହଣ୍ଡ୍ରିକାଂ ନିହ୍ନୁତଂ ।
ସପ୍ତଦଳ ପୁଷ୍ପଂ ମରିଚ ପିଷ୍ଟଂ ଗୋରୋଚନୟା ସନ୍ଧୃତଂ ।

---

ଏକାବେଳକେ ବାଳକଙ୍କୁ ଅତିସାର, ବାନ୍ତି, ପେଟଫୁଲା, ଆଉର ଭଉଁରୀ ରୋଗରେ ଜଡତା ପାଇଯାଏ, କେବଳ ଶାସ ମାତ୍ର ବାକି ରହିଥାଏ ମୃତବତ୍ ମଲା ସମାନ ହଏ ଏହାକୁ ଗୈରକ ରୋଗ କୁହାଯାଏ । ଏହି ରୋଗୀ ପିଲାର ମୁଣ୍ଡରେ, ପାଦରେ, ହାତରେ, ଧଳା କୁକୁଡ଼ା ଡିମ୍ବ ମଜ୍ଜା ରସ, ଘଷିଲେ ଏଥି ଦ୍ୱାରା ନିଶ୍ଚୟ ଗୈରକ ରୋଗ ଦୂର ହୋଇଯାଏ । ଏପରି କଲେ ଯଦି ସେହି ରୋଗ ଛାଡ଼େ ନାହିଁ, ତେବେ ପବିତ୍ର ପାଣି ଏହି ପିଲାକୁ ଜଳ ପ୍ରଦାନାଦି ଦ୍ୱାରା ପାଳନ କରିବେ । ନାଗରମୋଥା, ହରିଡ଼ା, ନିମ୍ବଛାଲି, ପଟୋଳ, ଅଳା, ଏମାନଙ୍କର ଉଷ୍ଣ ପାଚନପାଣି ପିଆଇଲେ ବାଳକର ଜ୍ୱର ଛାଡ଼ିଯାଏ । କଟୁକୀ, ପଞ୍ଚକୋଳର ଚୂର୍ଣ୍ଣ, ମହୁ, ଘିଅ ମିଶାଇ ପିଲାକୁ ଚଟାଇଲେ ଜ୍ୱର, ଅରୁଚି, ପ୍ରତିଶ୍ୟାୟ, ଶ୍ୱାସ, କାସ, ସବୁ ଛାଡ଼ିଯାଏ ।

ଚନ୍ଦ୍ରଗ୍ରହଣ ସମୟରେ ମୟୂରଚୂଳିଆ ଚେର ଉପୁଡ଼ାଇ ଆଣି ବାଳକର ଜଙ୍ଘରେ ଓ ବେକରେ ବାନ୍ଧିଦେଲେ ଗ୍ରହଦୋଷ ଜନିତ ଅହଣ୍ଡ୍ରିକା [ ଅଇଣ୍ଡିଆ ]

ପୀତଂ ନିହନ୍ତି ତଦହଣ୍ଡ୍ରିକା ରୋଗଂ ଶିଶୋ ର୍ନ ସ୍ମୃତଂ ।
ଉଦୁମ୍ବର ମୂଳଂ ବାଳକଟୀ ବନ୍ଧନା ଦହଣ୍ଡ୍ରିକାଂ ହନ୍ତି ।

❋ ଜ୍ୱର ଚିକିତ୍ସା ❋

ମୁସ୍ତାଭୟା ନିମ୍ବ ପଟୋଳ ଯଷ୍ଟି କ୍ୱାଥଃ ଶିଶୂନାଂ ଜ୍ୱରନାଶକାରୀ ।
ତଦ୍ୱଦ୍ଗୁଡ଼ୂଚୀ ସ୍ୱରସଶ୍ଚ ସାଦ୍ୟଃ ସୁପ୍ରତ୍ୟୟୋ ଽୟଂ ମଧୁନାବଲୀଢ଼ଃ ।
ସିତା ମଧୁଭ୍ୟାଂ କଟୁକୀ ଚ ଲୀଢ଼ା ସାଧ୍ମାନମୁଗ୍ରଂ ଜ୍ୱରମାଶୁ ହନ୍ୟାତ୍ ।
ତତ୍କଲ୍କ ଲେପଶ୍ଚ କୃତଃ ଶିଶୂନାଂ ମୁହୁର୍ମୁହୁ ର୍ଦୋଷ ବିନାଶ ହେତୁଃ ।
କ୍ୱାଥଃ କୃତଃ ପଦ୍ମକନିମ୍ବଧାନ୍ୟ ଛିନ୍ନୋଦ୍ଭବା ଲୋହିତ ଚନ୍ଦନୋତ୍ଥଃ ।
ଜ୍ୱରଂ ଜୟେତ୍ ସର୍ବଭବଂ କୃଶାନଂ ଧାତ୍ରୀ ଶିଶୁଭ୍ୟାଂ ପ୍ରକରେତ ପୀତଃ ।
ଅମୃତେ କୋଷିତାନରେ ଯ୍ୟାବଦ୍ଧ୍ୱାମାଷ୍ଟକଂ ଜଳେତ୍ ।
ଶିଶୂନାଂ ଶମୟତ୍ୟାଶୁ ସର୍ବଦୋଷଭବଂ ଜ୍ୱରଂ ।
ଯଷ୍ଟୀ ମଧୁ ରୁଗାକ୍ଷୀରୀ ଲଜାଞ୍ଜନ ସିତାକୃତଃ ।
ଲେହଃ ପ୍ରଦତ୍ତୋ ବାଳାନା ମଶେଷ ଜ୍ୱର ନାଶନଃ ।

---

ରୋଗ ଛାଡ଼ିଯାଏ । ସାତପାଖୁଡ଼ିଆ ଫୁଲ, କଳାମରିଚ ଚୂର୍ଣ୍ଣ କରି, ଗୋରୋଚନା ମିଶାଇ ପାନ କଲେ ପିଲାର ଅଇଣ୍ଠିଆ ରୋଗ ଦୂର ହୋଇଯାଏ । ଉଦୁମ୍ବରର ମୂଳ ପିଲାର ଅଣ୍ଟାରେ ବାନ୍ଧିଲେ ଅଇଣ୍ଠିଆ ରୋଗ ଛାଡ଼ିଯାଏ ।

ନାଗରମୋଥା, ହରଡ଼ା, ନିମ୍ବଛାଲି, ପଟୋଳ, ଗୁଳୁଚି, ଏହି ସବୁର କ୍ୱାଥ ପିଆଇଲେ ବାଳକର ଜ୍ୱର ଛାଡ଼ିଯାଏ । ଅଥବା ଗୁଳୁଚିର ଚୂର୍ଣ୍ଣ ଓ ସ୍ୱରସ, ମହୁ ସହିତ ଚଟାଇଲେ ଜ୍ୱର ଛାଡ଼ିଯାଏ । ଏହା ପ୍ରତ୍ୟକ୍ଷ ଫଳପ୍ରଦ । ମିଶ୍ରି, ମହୁ, କଟୁକୀ ଚୂର୍ଣ୍ଣ, ମହୁ ସହିତ ଚଟାଇଲେ ଆଧ୍ମାନ ସହିତ ଜ୍ୱର ନାଶ କରେ । ଆଉରି କଟୁକୀର କଳ୍କ ବାଳକର ଦେହରେ ଲେପନ କଲେ ଜ୍ୱର ଛାଡ଼ିଯାଏ । ପଦ୍ମକାଠ, ନିମ୍ବଛାଲି, ଗୁଳୁଚି, ରକ୍ତଚନ୍ଦନ, ଏହି ସବୁ ଦ୍ରବ୍ୟର କ୍ୱାଥ ବାଳକକୁ ଓ ତାହାର ମାତାକୁ ପାନ କରାଇଲେ ତ୍ରିଦୋଷ ଜନିତ ଜ୍ୱର ଦୂରହୁଏ । ଖାଲି ଗୁଳୁଚିକୁ ଆଠ ପ୍ରହର ଜଳରେ ବତୁରାଇ ତାହାକୁ ବାଟି ପିଆଇଲେ ବାଳକର ସବୁ ପ୍ରକାର ଜ୍ୱର ଦୂର ହୁଏ । ଯଷ୍ଟିମଧୁ, ମହୁ, ବଂଶରୋଚନା, ଲିଆ, ରସାଞ୍ଜନ ଶ୍ୱେତ ସାକର ଏହାସବୁ ଲେହ କରି ବାଳକକୁ ଚଟାଇଲେ ଜ୍ୱର ଛାଡ଼ିଯାଏ ।

## ✱ ବାତଜ୍ୱର ଚକିତ୍ସା ✱

କ୍ୱାଥଃ ସ୍ଥିର ଗୋକ୍ଷୁର ବଣ୍ଟ ବାଳ କ୍ଷୁଦ୍ରାଦ୍ୱୟ ଛିନ୍ନରୁହା କଶତୈଃ ।
ବାତଜ୍ୱରଂ ଫଶମୟେତ୍ ଦ୍ରପୀତୋ ବାଳେନ ଧାତ୍ର୍ୟା ଚ କୃଶାନୁକାରୀ ।
ପଞ୍ଚମୂଳୀ କୃତଃ କ୍ୱାଥଃ ପୀତୋ ବାତଜ୍ୱରାପହଃ ।
ତଦ୍ୱଚ୍ଛିନ୍ନରୁହା ଦ୍ରାକ୍ଷା ଗୋପକନ୍ୟା ବଳା ଭବଃ ।
ଗୁଡୂଚୀ ଶାରିବୋଶୀର ଚନ୍ଦନୋତ୍ପଳ ପଦ୍ମକୈଃ ।
ପରୂଷ ମଧୂକାଶ୍ମର୍ଯ୍ୟା ଧନ୍ୟାକୈ ର୍ବିହିତୋ ଜୟେତ୍ ।

## ✱ ପିତ୍ତଜ୍ୱର ଚିକିତ୍ସା ✱

ଶାରିବୋତ୍ପଳ କାଶ୍ମର୍ଯ୍ୟ ଛିନ୍ନା ପଦ୍ମକ ପର୍ପଟୈଃ ।
କ୍ୱାଥଃ ପୀତୋ ନିହନ୍ତ୍ୟାଶୁ ଶିଶୂନାଂ ପୈତ୍ତିକଂ ଜ୍ୱରଂ ।
ମୁସ୍ତା ପର୍ପଟକୋଶୀର ବାରପଦ୍ମକ ସାଧିତଂ ।
ଶୀତଂ ବାରି ନିହନ୍ତ୍ୟାଶୁ ତୃଷ୍ଣା ଦାହ ବମି ଜ୍ୱରାନ୍ ।
ମଧୂକଂ ଚନ୍ଦନଂ ଦ୍ରାକ୍ଷା ଧାନ୍ୟକଂ ସହୁସାଲଭଂ ।
ଏତୈଃ କ୍ୱାଥଃ କୃତୋ ହନ୍ୟା ଦାହଂ ବାତଜ୍ୱରଂ ତଥା ।

---

ଶାଳପର୍ଣ୍ଣି, ଗୋଖର, ଶୁଣ୍ଠୀ, କୁରୁବଲ୍ଲି, ଚକାଭେଜା, ଡେଙ୍ଗାଭେଜା, ଗୁଳୁଚ, ଚଣ୍ଡଇତା ଏହିସବୁ ଦ୍ରବ୍ୟର କ୍ୱାଥ ବାଳକକୁ ଓ ତାହାର ମାତାକୁ ପାନ କରାଇଲେ ବାତଜ୍ୱର ନାଶହୁଏ ଓ ଅଗ୍ନିଦୀପ୍ତ ହୁଏ । ସାନ ପାଞ୍ଚମୂଳର କ୍ୱାଥ ପାନକଲେ ବାତଜ୍ୱର ଦୂରହୁଏ । ଗୁଳୁଚି, ଦ୍ରାକ୍ଷା, ତେଜପତ୍ର, ବାଡ଼ିଅଳା ଏହି ସବୁର କ୍ୱାଥ ପାନ କଲେ ବାତଜ୍ୱର ଦୂରହୁଏ । ଗୁଳୁଚି, ଚେରମାରୁ, ବେଣା, ରକ୍ତଚନ୍ଦନ, ନୀଳୋତ୍ପଳ, ପଦ୍ମକାଠ, ପରୁଷଫଳ, ଯାଠିମଧୁ, ଗମ୍ଭାରୀ, ଧନିଆ, ଏହି ଦ୍ରବ୍ୟର କ୍ୱାଥ ପାନ କଲେ ବାତଜ୍ୱର ଦୂର ହୁଏ ।

ଚେରମାରୁ, ନୀଳୋତ୍ପଳ, ଗମ୍ଭାରୀ, ଗୁଳୁଚି, ପଦ୍ମକାଠ, ପାପଡ଼ା, ଏମାନଙ୍କର ସିଦ୍ଧ କ୍ୱାଥ ପାନ କଲେ ଶୀଘ୍ର ପିତ୍ତଜ୍ୱର ନାଶହୁଏ । ନାଗରମୋଥା, ପାପଡ଼ା, ବେଣା, କୁରୁବଲ୍ଲୀ, ପଦ୍ମକାଠ, ଏହି ଦ୍ରବ୍ୟର କ୍ୱାଥ ଶୀତଳ କରି ପାନ

ମୁସ୍ତକଂ ଚନ୍ଦନଂ ବାସା ହ୍ରୀବେରଂ ଯଷ୍ଟିକାମୃତା ।
ଏଷାଂ କ୍ୱାଥୋଽସ୍ର ପିତ୍ତଘ୍ନ ସ୍ତୃଷ୍ଣାଦାହ ଜ୍ୱରାପହଃ ।
ବାସା ପର୍ପଟକୋଶୀର ନିମ୍ବ ଭୂନିମ୍ବ ସାଧିତଃ ।
କ୍ୱାଥୋ ହନ୍ତି ବମିଂ ଶ୍ୱାସ କାସ ପିତ୍ତଜ୍ୱରାନ୍ ଶିଶୋଃ ।

✽ କଫଜ୍ୱର ଚିକିତ୍ସା ✽

ଅଭୟାମଲକୀ କୃଷ୍ଣା ଚିତ୍ରକୋଽୟଂ ଗଣୋ ମତଃ ।
ଦୀପନଃ ପାଚନୋ ଭେଦୀ ସର୍ବ ଶ୍ଳେଷ୍ମ ଜ୍ୱରାପହଃ ।
କଟ୍ଫଲଂ ପୁଷ୍କରଂ ଶୃଙ୍ଗୀ ପିପ୍ପଳୀ ମଧୁନା ସହ ।
ଏଷାଂ ଲେହୋ ଜ୍ୱରଂ ଶ୍ୱାସଂ କାସଂ ମନ୍ଦାନଳଂ ଜୟେତ୍ ।
କଟୁକଂ କଟ୍ଫଳଂ ଶୃଙ୍ଗୀ ପୁଷ୍କରଂ ପିପ୍ପଳୀ ତଥା ।
ସମସ୍ତାନେକଶୋ ବାପି ଦ୍ୱିଶୋ ବାପି ଭିଷଗ୍‌ବରଃ ।
ଏତାଂ ଶ୍ଚୂର୍ଣ୍ଣୀକୃତା ନଦ୍ୟା ନ୍ମଧ୍ୱାର୍ଦ୍ରକ ରସାପ୍ଲୁତାନ୍ ।
କଫଜ୍ୱରାରୁଚି ଶ୍ୱାସ ଛର୍ଦ୍ଦି ଶୂଳାପହାନ୍ ଶିଶୋଃ ।

---

କଲେ ତୃଷା, ଦାହ, ବାନ୍ତି, ଜ୍ୱର, ଶୀଘ୍ର ନାଶଯାଏ । ଯଷ୍ଟିମଧୁ, ରକ୍ତଚନ୍ଦନ, ଦ୍ରାକ୍ଷା, ଧନିଆ, ଦୁର୍ଲଭ ଏମାନଙ୍କର କ୍ୱାଥ ସିଦ୍ଧ କରି ପିଇଲେ ଦାହ, ପିତ୍ତଜ୍ୱର ନାଶ ହୁଏ । ନାଗରମୋଥା, ରକ୍ତଚନ୍ଦନ, ବାସଙ୍ଗ, ଗୁଡୁବଲ୍ଲୀ, ଯଷ୍ଟିମଧୁ, ଗୁଳୁଚୀ, ଏମାନଙ୍କର କ୍ୱାଥ ପିଇଲେ ରକ୍ତପିତ୍ତ, ତୃଷା, ଦାହ, ଜ୍ୱର ନାଶ-କରେ । ବାସଙ୍ଗ, ପାପଡ଼ା, ବେଣା, ନିମ୍ବଗୁଲ, ଚିରାଇତା, ଏମାନଙ୍କର ସିଦ୍ଧ କ୍ୱାଥ ପିଲାଙ୍କୁ ପିଆଇଲେ, ବାନ୍ତି, ଶ୍ୱାସ, କାସ, ପିତ୍ତଜ୍ୱର ନାଶହୁଏ

ହରିଡ଼ା, ଅଁଳା, ପିପ୍ପଳୀ, ଚିତାପାରୁ ଏହି ଔଷଧମାନଙ୍କର ପାଚନ ପାନ କଲେ ସବୁ ପ୍ରକାର କଫଜ୍ୱର ନାଶକରେ । କାଫଳ, ପୁଷ୍କରମୂଳ, କକଡ଼ାଶୃଙ୍ଗୀ, ଏମାନଙ୍କର ଚୂର୍ଣ୍ଣକୁ ପିପ୍ପଳୀ ମହୁ ସହ ଚଟାଇଲେ ଜ୍ୱର, ଶ୍ୱାସ, କାସ, ମନ୍ଦାଗ୍ନି ନାଶ କରିଥାଏ । ନସ୍ୱର, କାଫଳ, କକଡ଼ାଶୃଙ୍ଗୀ, ପୁଷ୍କରମୂଳ, ପିପ୍ପଳୀ ଏହାଙ୍କୁ ଅଥବା ଗୋଟି ଗୋଟିକୁ ଚୂର୍ଣ୍ଣ କରି ଅଦ୍ରକରେ ମହୁ [illegible] । ମିଶାଇ ଖୁଆ-ଇଲେ କଫ ଜ୍ୱର, ଅରୁଚି, ଶ୍ୱାସ, ବାନ୍ତି, ଶୂଳ [illegible] ଯାଏ । ଶ୍ଳେଷ୍-

କ୍ଷୌଦ୍ରୋପକୁଲ୍ୟା ସଂଯୁକ୍ତଃ ଶ୍ୱାସ କାସ ଜ୍ୱରାପହଃ ।
ପ୍ଲୀହାନଂ ହନ୍ତି ହିକ୍କାଂ ଚ ବାଳାନାଂ ତୁ ପ୍ରଶଂସ୍ୟତେ ।

* ବାତପିତ୍ତ ଜ୍ୱରେ *

ମୁସ୍ତା ପର୍ପଟକ ଛିନ୍ନା କିରାତଂ ବିଶ୍ୱ ଭେଷଜଂ ।
ଏଷାଂ କଷାୟୋ ଦାତବ୍ୟୋ ବାତପିତ୍ତ ଜ୍ୱରାପହଃ ।
ଉଶୀରଂ ମଧୁକଂ ଦ୍ରାକ୍ଷା କାଶ୍ମରୀ ଶାଳପର୍ଣ୍ଣକଂ ।
ପରୂଷକଂ ପଦ୍ମକଂ ଚ ମଧୁକଂ ମଧୁକଂ ବଳା ।
ଏଭିଃ କୃତଃ କଷାୟୋ ଽୟଂ ବାତପିତ୍ତ ଜ୍ୱରଂ ଜୟେତ୍ ।
ପ୍ରଳାପ ମୂର୍ଚ୍ଛା ସମୋହ ତୃଷ୍ଣା ପିତ୍ତଜ୍ୱରାପହଃ ।

* ପିତ୍ତକଫ ଜ୍ୱରେ *

ତ୍ରିଫଳା ପିଚୁମର୍ଦ୍ଦଶ୍ଚ ପଟୋଳଂ ମଧୁକଂ ବଳା ।
ଏଭିଃ କ୍ୱାଥଃ କୃତଃ ପୀତଃ ପିତ୍ତଶ୍ଳେଷ୍ମଜ୍ୱରାପହଃ ।
ଅମୃତେନ୍ଦ୍ରଯବୋ ଽରିଷ୍ଟଂ ପଟୋଳଂ କଟୁରୋହିଣୀ ।
ନାଗରଂ ଚନ୍ଦନଂ ମୁସ୍ତା ପିପ୍ପଳୀ ଚୂର୍ଣ୍ଣ ସଂଯୁତଂ ।

---

ପିପ୍ପଳୀଚୂର୍ଣ୍ଣ ମହୁ ସହିତ ଚଟାଇଲେ ଶ୍ୱାସ, କାସ, କଫଜ୍ୱର, ଏମାନଙ୍କୁ ନାଶ-କରେ ଏବଂ ପ୍ଲୀହା, ହିକ୍କା, ମଧ ନାଶପାଏ । ବାଳକ ରୋଗୀ ପକ୍ଷରେ ଏହା ଅତି ପ୍ରଶସ୍ତ ଅଟେ ।

ନାଗରମୋଥା, ପାପଡ଼ା, ଗୁଳୁଚୀ, ଚିରେଇତା, ଶୁଣ୍ଠୀ ଏହି ସବୁର କ୍ୱାଥ ବାଳକକୁ ପାନ କରାଇଲେ ବାତପିତ୍ତ ଜ୍ୱର ଛାଡ଼ିଯାଏ । ଉଶୀର, ଯଷ୍ଟିମଧୁ, ଦ୍ରାକ୍ଷା, ଗମ୍ଭାରି, ଶାଳପର୍ଣ୍ଣି, ପରୁଷଫଳ, ପଦ୍ମକାଠ, ଯଷ୍ଟିମଧୁ, ମହୁଲ, ବାଡ଼ଅଳା ଏହି ସବୁ ଦ୍ରବ୍ୟର କ୍ୱାଥ ପାନକଲେ ବାତପିତ୍ତଜ୍ୱର ନାଶହୁଏ ଏବଂ ପ୍ରଳାପ, ମୂର୍ଚ୍ଛା, ତୃଷା, ପିତ୍ତକଫଜ୍ୱର ଏହାକୁ ମଧ୍ୟ ନାଶକରେ ।

ହରଡ଼ା, ବାହାଡ଼ା, ଅଳା, ନିମ୍ବଛାଲି, ପଟୋଳ, ଯଷ୍ଟିମଧୁ, ବାଡ଼ଅଳା ଏହି ସବୁର କ୍ୱାଥକୁ ପିଇଲେ ପିତ୍ତକଫଜ୍ୱର ନାଶଯାଏ । ଗୁଳୁଚୀ, ଇନ୍ଦ୍ରଯବ, ନିମ୍ବଛାଲି, ପଟୋଳ, କଟୁକି, ଶୁଣ୍ଠୀ, ରକ୍ତଚନ୍ଦନ, ନାଗରମୋଥା, ଏହି ସବୁ

ଅମୃତାଷ୍ଟକ ମିତ୍ୟେତ ପ୍ପିତ୍ତଶ୍ଲେଷ୍ମଜ୍ୱରାପହଃ ।
ହୃଲ୍ଲାସା ରୋଚକଚ୍ଛର୍ଦ୍ଦି ତୃଷ୍ଣାଦାହ ନିବାରଣଂ ।
ଛିନ୍ନାଶଠୀ ପୁଷ୍କରମୂଳ ତିକ୍ତା ଶୃଙ୍ଗୀ ଯବାଠାମୃତବଲ୍ଲରୀ ଚ ।
ଦୁରାଲଭା ଶୁଣ୍ଠ କିରାତ ତିକ୍ତାଃ ସମସ୍ତଦୋଷ ଜ୍ୱରହୃଦ୍‌ଗଣୋଽୟଂ ।
ଭୂନିମ୍ବଦାରୁ ଦଶମୂଳମହୌଷଧାବ୍ଦ ତିକ୍ତେନ୍ଦ୍ରବୀଜ ଧନିକେଭକଣା କଷାୟଃ ।
ତନ୍ଦ୍ରାପ୍ରଳାପ କସନାରୁଚି ଦାହମୋହ ଶ୍ୱାସାଦିଯୁକ୍ତ ମଖିଳଂ ଜ୍ୱରମାଶୁ ହନ୍ତି ।

✱ ଅତୀସାରେ ✱

ମୁସ୍ତାତିବିଷା ଶକ୍ରଯବାମ୍ବୁ ଭସ୍ମ ଶିଶୋରତୀସାରହରଃ କଷାୟଃ
ଆମାର୍ଘ୍ରି ବଲ୍କ ସ୍ୱରସସ୍ତ ତଦ୍ୱଦ୍ଧିଦ୍ୱୟଂ ବା ମଧୁନାବଲୀଢ଼ଂ
ନାଗରାତିବିଷା ମୁସ୍ତା କୁଟଜୈଃ କ୍ୱଥିତଂ ଜଳଂ ।
ପ୍ରାତଃ ପୀତଂ କୁମାରାଣାଂ ଶୀଘ୍ରଂ ସର୍ବାତିସାରନୁତ୍ ।
ହରିଦ୍ରାଦ୍ୱୟ ଯଷ୍ଟ୍ୟାହ୍ୱା ଫଣିମ୍ବା ଶକ୍ରଯବୈଃ କୃତଃ ।
ଶିଶୋ ର୍ଜ୍ୱରାତିସାରଘ୍ନଃ କଷାୟ ସ୍ତନ୍ୟଦୋଷଜିତ୍ ।

---

ଦ୍ରବ୍ୟର କ୍ୱାଥ କରି ପିପ୍ପଳୀଚୂର୍ଣ୍ଣ ସହିତ ବାଳକକୁ ପିଆଇଲେ ଏହି ଅମୃତାଷ୍ଟକ ପିତ୍ତକଫଜ୍ୱର, ହୃଲ୍ଲାସ, ଅରୁଚି, ବାନ୍ତି, ତୃଷା, ଦାହ, ନିବାରଣ କରେ । ଗୁଳୁଚୀ ଗଣ୍ଠିଶୁଣ୍ଠୀ, ପୁଷ୍କରମୂଳ, କଟୁକୀ, କକଡ଼ାଶୃଙ୍ଗୀ, ଅଜାଣବନ୍ଧ, ଗୁଳୁଚୀ, ଦୁଲଭା, ଶୁଣ୍ଠୀ, ଚିରାଇତା, ଏମାନଙ୍କ ସମସ୍ତ ଦୋଷଜ ଜାତ ଜ୍ୱରକୁ ଏହି ଔଷଧିଗଣର କ୍ୱାଥ ନାଶକରେ । ଚିରାଇତା, ଦେବଦାରୁ, ଦଶମୂଳ, ଶୁଣ୍ଠୀ, ନାଗରମୋଥା, କଟୁକୀ, ଇନ୍ଦ୍ରଯବ, ଧନିଆ, ଗଜପିପ୍ପଳୀ ଏମାନଙ୍କର କ୍ୱାଥ ପାନକଲେ ତନ୍ଦ୍ରା, ପ୍ରଳାପ, କାସ, ଅରୁଚି, ଦାହ, ମୂର୍ଚ୍ଛା ଶ୍ୱାସ ହେଉଥିବା ଜ୍ୱରକୁ ଶୀଘ୍ର ନାଶକରେ ।

ନାଗରମୋଥା, ଉତୁସୀ, ଇନ୍ଦ୍ରଯବ, କୁରୁବଲ୍ଲୀ ଏହି ଦ୍ରବ୍ୟମାନଙ୍କର କ୍ୱାଥ ପାନକଲେ ବାଳକର ଅତୀସାର ଦୂର ହୁଏ । ଅଥବା ଆମ୍ବମୂଳ ଛାଲିର ରସ ଅତିସାର ହରଣକରେ । ସେହିପରି ବୁଢ଼ି ବୁଢ଼ି ,ହୁଡ଼ୁକି ମହୁ ସହିତ ଚଟାଇଲେ ଅତୀସାର ନାଶକରେ । ଶୁଣ୍ଠୀ, ଉତୁସୀ, ନାଗରମୋଥା, ଇନ୍ଦ୍ରଯବ, ଏହି ଦ୍ରବ୍ୟ-ମାନଙ୍କର କ୍ୱାଥ ବାଳକକୁ ପାନକରାଇଲେ ସବୁ ପ୍ରକାର ଅତୀସାର ଶୀଘ୍ର ନାଶହୁଏ ।

ଧାତକୀ ବିଲ୍ୱ ଧନ୍ୟାକ ଲୋଧ୍ରେନ୍ଦ୍ରଯବ ବାଳକୈଃ ।
ଲେହଃ କ୍ଷୌଦ୍ରେଣ ବାଳାନାଂ ଜ୍ୱରାତୀସାର ବାନ୍ତିନୁତ୍ ।
ମୁସ୍ତଂ ମୋଚରସଃ ପାଠା ବିଲ୍ୱଂ ଲୋଧ୍ରଂ ସନାଗରଂ ।
ତକ୍ରେଣ ପୀତଂ ଦୁର୍ବାର ଶିଶୋହନ୍ତ୍ୟଦସମନ୍ୱିତଂ ।
ଲୋଧ୍ରଂ ସମଙ୍ଗା ଜଳଧାତକୀଭିଃ ସମାନଭାଗୈର୍ବିହିତ କଷାୟଃ ।
ବାଳାତୀସାରଂ ସହସା ନିହନ୍ୟା ଦେକାଥ ମୁସ୍ତା ମଧୁନାବଲୀଢ଼ା ।

* ଗ୍ରହଣୀରୋଗେ *

ଯବାନୀ ଜୀରକଂ ବ୍ୟୋଷଂ କୁଟଜଂ ବିଶ୍ୱଭେଷଜଂ ।
ଏତଦ୍ଧୂମଯୁତଂ ଲୀଢ଼ଂ ବାଳାନାଂ ଗ୍ରହଣୀଂ ଜୟେତ୍ ।

* ରକ୍ତାତୀସାରେ *

ସହରୀତକୀ ପ୍ରତିବିଷା କୁଟଜଂ ଶବରଂ ସହିଙ୍ଗୁ କଳିଙ୍ଗଯବଂ ।
ଇତି ଚୂର୍ଣ୍ଣିତଂ ଗଦହନ୍ତ୍ୟକ ମିଦଂ ରୁଧିରାତି ସୃତର୍ଗୁଦଶୂଳହରଂ ।

---

ହଳଦୀ, ଦାରୁହଳଦୀ, ଯାଠିମଧୁ, ଚକଡାଭେଜା ମୂଳ, ଇନ୍ଦ୍ରଯବ, ଏହି ଦ୍ରବ୍ୟମାନଙ୍କର ସିଦ୍ଧ କ୍ୱାଥ ବାଳକର ଜ୍ୱରାତୀସାରକୁ ନଷ୍ଟକରେ ଏବଂ ଦୁଗ୍ଧଦୋଷ ଦୂର କରଇଏ । ଧାରୁକୀଫୁଲ, ବେଲ, ଧନିଆ, ଲୋଧ, ଇନ୍ଦ୍ରଯବ, କୁରୁବଳ୍ଲୀ ଏହି ଛ ଦ୍ରବ୍ୟକୁ ଚୂର୍ଣ୍ଣ କରି ମହୁ ସହିତ ଚାଟିଲେ ବାଳକର ଜ୍ୱରାତୀସାର ନଷ୍ଟହୁଏ ଏବଂ ବାନ୍ତି ଶାନ୍ତହୁଏ । ନାଗରମୋଥା, ବୁହଅଠା, ଅକାଳବନ୍ଧ, ବେଲରସ, ଲୋଧ, ଶୁଣ୍ଠୀ ଏହାର ଚୂର୍ଣ୍ଣକୁ ଚହ୍ଲା ସହିତ ପାନ କଲେ ଦୁର୍ବାର ଅତିସାର ଶୀଘ୍ର ନାଶହୁଏ । ଲୋଧ, ମଞ୍ଜିଷ୍ଠା, କୁରୁବଳ୍ଲୀ, ଧାତୁକଫୁଲ ଏମାନଙ୍କର କ୍ୱାଥ ପାନ କଲେ ବାଳକର ଅତିସାର ଶୀଘ୍ର ଦୂରହୁଏ । ଖାଲି ନାଗରମୋଥା ଗୁଣ୍ଡ ମହୁ ସହିତ ଚଟାଇଲେ ବାଳକର ଅତିସାର ଶାନ୍ତହୁଏ ।

ଯୁଆଣି, ଜୀର, ମରିଚ, ପିପ୍ପଳୀ, କେରୁଆଁଗୁଲ, ଶୁଣ୍ଠୀ, ଏହାକୁ ଚୂର୍ଣ୍ଣକରି ମହୁ ସହିତ ଚଟାଇଲେ ବାଳକର ଗ୍ରହଣୀ ରୋଗ ଦୂର ହୁଏ ।

ହରଡ଼ା, ଅତୁଯୀ, କଳାଲୁଣ, କଠ, ହିଙ୍ଗୁ, ଓ ଇନ୍ଦ୍ରଯବ, ଏହିସବୁ ସମାନ ଭାଗରେ ଆଣି ଚୂର୍ଣ୍ଣ କରି, ଏହାକୁ ସେବନ କଲେ ଅଧିକ ହେଉଥିବା ରକ୍ତ-ହ୍ଲା ଓ ଗୁଦପୀଡ଼ା, ଶୂଳ, ଅତିଶୀଘ୍ର ଦୂର ହୁଏ ।

## ✱ ଅର୍ଶରୋଗେ ✱

ସମାଙ୍ଗା ନାଗରଂ ପାଠା ଦାଡ଼ିମଂ କୁଟଜଂ ତଥା ।
ଚୂର୍ଣ୍ଣୋ ଽଯ୍ୟଂ ଗୁଡ଼ତକ୍ରାଭ୍ୟାଂ ପୀତୋ ଽର୍ଶଃ ଶମନଃ ପରଃ ।
କୁଟଜଂ ବୈଠଜଂ ଖାଙ୍ଗଂ ନେକଶରଂ ପଦ୍ମକେଶରଂ ।
ଏତନ୍ମଧୁଯୁତଂ ଲୀଢ଼ଂ ରକ୍ତାର୍ଶୋନାଶନଂ ପରଂ ।

## ✱ ଆମାଜୀର୍ଣ୍ଣେ ✱

ଧାନ୍ୟ ନାଗରଜଃ କ୍ୱାଥଃ ଶୂଳାମାଜୀର୍ଣ୍ଣ ନାଶନଃ ।
ଚୂର୍ଣ୍ଣଂ ତକ୍ରଯୁତଂ ପୀତଂ ତଦ୍ଦୋଷାଗ୍ନି ଜାରକୈଃ ।
ପିପ୍ପଳୀ ରୁଚକଂ ପଥ୍ୟା ଚୂର୍ଣ୍ଣମସ୍ତୁ ଜଳଂ ପିବେତ୍ ।
ସର୍ବାଜୀର୍ଣ୍ଣହରଂ ଶୂଳ ଗୁଳ୍ମାନାହାଗ୍ନି ମାନ୍ଦ୍ୟଜିତ୍ ।
ତ୍ୱକ୍ପତ୍ରରାସ୍ନାଗୁରୁଶୈଳ୍ୟକୁଷ୍ଠୈ ରମ୍ଳପ୍ରପିଷ୍ଟୈଃ ସବଚ ଶତାହ୍ୱୈଃ
ଉଦ୍ୱର୍ତ୍ତନଂ ଖଲ୍ଲି ବିଶୂଚିକାଘ୍ନଂ ତୈଳଂ ବିପକ୍ୱଂ ଚ ତଦର୍ଥକାରି ।

---

ଜୁଆଣୀ, ଶୁଣ୍ଠୀ, ଅଜାନବନ୍ଧ, ଡ଼ାଳିମ୍ବ, କେରୁଆଁ ଛାଲ ଏହାସବୁ ଚୂର୍ଣ୍ଣକରି ଗୁଡ଼ ଓ ଚହ୍ଲା ସହିତ ମିଶାଇ ପାନକଲେ ଅର୍ଶରୋଗ ଦୂର ହୁଏ । କେରୁଆଁ-ଛାଲ, ଇନ୍ଦ୍ରଯବ, ନାଗକେଶର, ପଦ୍ମକେଶର, ଏହାସବୁ ଚୂର୍ଣ୍ଣ କରି ମଧୁ ସହିତ ଚାଟିଲେ ରକ୍ତାର୍ଶ ଦୂର ହୁଏ ।

ଧନ୍ୟା, ଶୁଣ୍ଠୀ, ଏହାର କ୍ୱାଥ ଶୂଳ, ଆମାଜୀର୍ଣ୍ଣକୁ ନାଶକରେ ଏବଂ ଶୁଣ୍ଠୀ, ମରିଚ, ପିପ୍ପଳୀ, ଚିତାପାରୁ, ଜୀରା, ଏମାନଙ୍କର ଚୂର୍ଣ୍ଣ ଚହ୍ଲାସହ ପାନକଲେ ଶୂଳ, ଆମାଜୀର୍ଣ୍ଣ ନାଶହୁଏ । ପିପ୍ପଳୀ, କଳାଲୁଣ, ହରିଡା, ଏମାନଙ୍କର ଚୂର୍ଣ୍ଣ ଚହ୍ଲା ସହ ପାନକଲେ ସବୁପ୍ରକାର ଅଜୀର୍ଣ୍ଣ ଦୂରହୁଏ । ଗୁଡ଼ତ୍ୱକ, ତେଜପତ୍ର, ରାସ୍ନା, ଶ୍ୱେତଚନ୍ଦନ, ସଜନାଛାଲ, କୁଡ଼, ବଚ, ସ[illegible], ଏମାନଙ୍କ କାଞ୍ଜିପାଣିରେ ବାଟି ଉଦ୍ୱର୍ତ୍ତନ କରି (ଭଙ୍ଗାଭଙ୍ଗି) ଅଥବା ଏହି ଦ୍ରବ୍ୟମାନ ତେଲପାକ କରି ମର୍ଦ୍ଦନ କଲେ [illegible]ଖୀସାର ଓ ବିସୂଚି ନାଶହୁଏ ।

### ✻ କ୍ରିମିରୋଗେ ✻

ବିଡ଼ଙ୍ଗଂ ମଧୁନା ଲିଢ୍ବା ପୌଷ୍କରଂ ବା ସୁଶିଗ୍ରୁକଂ ।
ଅଶ୍ନୁକନ୍ତି ତଥୈକାମ୍ଳା କ୍ରିମିଭ୍ୟୋ ମୁଚ୍ୟତେ ଶିଶୁଃ ।
ମୁସ୍ତଂବିଡ଼ଙ୍ଗମଗଧାଖୁକର୍ଣ୍ଣି କମ୍ପିଲ୍ଲକୋ ଦାଡ଼ିମ ବଲ୍କଲଂ ଚ ।
ଏତତ୍କ୍ରିମୀନ୍ ସହରମ୍ଭଶବୈଶାନ୍ କ୍ଷୌଦ୍ରେଣ ଲିଢ଼ଂ ଶମୟତ୍ୟବଶ୍ୟଂ ।
ଯବକ୍ଷାରଂ କ୍ରିମିଘ୍ନଂ ମଗଧା ମଧୁନା ସହ ।
ଭକ୍ଷୟେତ୍ କ୍ରିମିରୋଗଘ୍ନଂ ପଂକ୍ତିଶୂଳହରଂ ପରଂ ।

### ✻ କାସ ଓ ଶ୍ୱାସ ରୋଗେ ✻

ପିପ୍ପଲୀ ପିପ୍ପଲାମୂଲଂ ନାଗରଂ ମଧୁନା ଲିହନ୍ ।
କାସଂ ପଞ୍ଚବିଧଂ ଶ୍ୱାସଂ ଶିଶୁରଶୁ ବିନାଶୟେତ୍ ।
ବହ୍ବିତୋ ମଧୁନା ଲେହୋ ବ୍ୟାଘ୍ରୀ କୁସୁମ କେଶରୈଃ ।
ଲିଢ଼ୋ ବିନାଶୟତ୍ୟାଶୁ କାସଂ ପଞ୍ଚବିଧଂ ଶିଶୋଃ ।
କ୍ଷୌଦ୍ରଯୁକ୍ତା ତୁଗାକ୍ଷୀରୀ କାସଶ୍ୱାସା ବ୍ୟପୋହତି ।
ବାଳସ୍ୟ କଥିତଂ କୃଷ୍ଣା ଶୃଙ୍ଗୀ ବା ମଧୁ ସଂଯୁତା ।

---

ବିଡ଼ଙ୍ଗ ଅଥବା ପୁଷ୍କରମୂଳ, ସଜନାଛାଲି, ଅଥବା ଏକ ମୁଷାକାଣି ଏହି ତିନି ଯୋଗକୁ ଭିନ୍ନ ଭିନ୍ନ କରି ମହୁ ସହିତ ଚାଟିଲେ ବାଳକ କ୍ରିମିରୋଗରୁ ମୁକ୍ତହୁଏ । ଅନ୍ୟଚ, ନାଗରମୋଥା, ବିଡଙ୍ଗ, ପିପ୍ପଳୀ, ମୁଷାକାଣୀ, (କାମ୍ପିଲ) କମଳାଗୁଣ୍ଡି, ଡାଳିମ୍ବଛାଲି ଏହି ସବୁର ଚୂର୍ଣ୍ଣ ମହୁ ସହିତ ଚାଟିଲେ ବାଳକର କ୍ରିମିରୋଗ ଦୂର ହୁଏ । ଯବକ୍ଷାର, ବିଡଙ୍ଗ, ପିପ୍ପଳୀ ଏହି ତିନିଦ୍ରବ୍ୟ ମହୁସହିତ ଚାଟିଲେ କ୍ରିମିରୋଗ ନାଶହୁଏ ଏବଂ ଶୂଳକୁ ମଧ୍ୟ ନାଶ କରେ ।

ସେଟ ପିପ୍ପଳୀ, ପିପ୍ପଳାମୂଳ, ଶୁଣ୍ଠୀ ଏହି ସବୁ ଚୂର୍ଣ୍ଣକରି ମହୁ ସହିତ ବାଳକକୁ ଚଟାଇଲେ ପାଞ୍ଚ ପ୍ରକାର କାସ ଓ ଶ୍ୱାସ ଦୂର ହୁଏ । ଚକଡ଼ାଭେଜାର ଫୁଲ ଓ କେଶର ମହୁ ସହିତ ମିଶାଇ ଚଟାଇଲେ ବାଳକର ପାଞ୍ଚପ୍ରକାର କାସ ନାଶ ହୁଏ । ଅଥବା ବଂଶରୋଚନା ମହୁ ସହିତ ଚାଟିଲେ ବାଳକର କାସ ଶ୍ୱାସ

ଏଳାଟୁଙ୍ଗୀ ଜଟାମାଂସୀ ମୂଳକଞ୍ଚ ଫଳାନ୍ୱିତା ।
ଘୃତେନ ମଧୁନା ଲିଢ଼ା କାସଂ ବାଳସ୍ୟ ଦୁସ୍ତରଂ ।

**✻ ହିକ୍କା ରୋଗେ ✻**

ସୁବର୍ଣ୍ଣଗୈରିକଂ ପିଷ୍ଟ୍ୱା ମଧୁନା ସହଲେହୟେତ୍ ।
ଶୀଘ୍ରଂ ସୁଖମବାପ୍ନୋତି ତେନ ହିକ୍କାର୍ଦ୍ଦିତଃ ଶିଶୁଃ ।
ଶୁଣ୍ଠୀ ଧାତ୍ରୀ କଣାଚୂର୍ଣ୍ଣଂ ଲେହୟେତ୍ ମଧୁନା ଶିଶୁଃ ।
ହିକ୍କାନାଂ ଶାମ୍ୟତେ ତଦ୍‌ବ ଦେହଂ ବା ମାକ୍ଷିକଂ ଶକୃତ୍ ।
ପିପ୍‌ପଳୀ ରେଣୁକା କ୍ୱାଥଃ ସହିଙ୍ଗୁ ସମଧୁସ୍ତଥା
ହିକ୍କାଂ ବହୁବିଧଂହନ୍ତ୍ୟା ବଦଂ ଧନ୍ୱନ୍ତରେର୍ମତଃ ।

**✻ ଛର୍ଦ୍ଦି ରୋଗେ ✻**

ହରୀତକ୍ୟାଃ କୃତଂ ଚୂର୍ଣ୍ଣଂ ମଧୁନା ସହ ଲେହୟେତ୍ ।
ଅଧଃପ୍ରାପ୍ତେହୃତେ ଦୋଷେ ଶୀଘ୍ରଂ ଛର୍ଦ୍ଦିଃ ପ୍ରଶାମ୍ୟତି ।
ପଟୋଳ ନିମ୍ୱ ତ୍ରିଫଳା ଗୁଡ଼ୂଚୀଭିଃ ଶ୍ରୁତଂ ଜଳଂ ।
ପୀତଂ କ୍ଷୌଦ୍ରଯୁତଂ ଛର୍ଦ୍ଦି ମମ୍ଳପିତ୍ତଭବାଂ ହରେତ୍ ।

---

ଶାନ୍ତ ହୁଏ । ପିପ୍ପଳୀ, କାକଡ଼ାଶୃଙ୍ଗୀ, ମୂଳାମଞ୍ଜି ଏହି ସବୁ ଦ୍ରବ୍ୟକୁ ଚୂର୍ଣ୍ଣ କରି ମହୁ ସହିତ ଗୁଟିଲେ ବାଳକର କାସ ଓ ଶ୍ୱାସ ଦୂର ହୁଏ । ଅଥବା କେବଳ କାକଡ଼ାଶୃଙ୍ଗୀ, ମୂଳାମଞ୍ଜି, ଏହାକୁ ଚୂର୍ଣ୍ଣ କରି ଘିଅ ଓ ମହୁ ମିଶାଇ ଗୁଟିଲେ ବାଳକର ଅସାଧ୍ୟ କାସ ନାଶଯାଏ ।

ସୁବର୍ଣ୍ଣଗେରୁକୁ ବାଟି ମହୁ ସହିତ ଗୁଟିଲେ ହିକ୍କା ପୀଡ଼ିତ ବାଳକ ଶୀଘ୍ର ଆରାମ ପାଏ । ଶୁଣ୍ଠୀ, ଅଳା, ପିପ୍ପଳୀ, ଏମାନଙ୍କର ଚୂର୍ଣ୍ଣ ମହୁ ସହିତ ଗୁଟିଲେ ହିକ୍କା ଶାନ୍ତହୁଏ । ଅଥବା ପିପ୍ପଳୀ, ରେଣୁକାବୀଜ, ଏହାକୁ କ୍ୱାଥ କରି ହିଙ୍ଗୁ ଓ ମହୁ ସହିତ ପିଇଲେ ସବୁ ପ୍ରକାର ହିକ୍କା ଶାନ୍ତ ହୁଏ ।

ସାନ ହରଡ଼ାକୁ ଚୂର୍ଣ୍ଣ କରି ମହୁ ସହିତ ଚଟାଇଲେ ଅଧୋଗତ ଦୋଷ ପ୍ରତି ଛର୍ଦ୍ଦି ଶୀଘ୍ର ନାଶକରେ । ପଟୋଳ, ନିମଗୁଳି, ତ୍ରିଫଳା, ଗୁଳୁଚି ଏମାନଙ୍କର କ୍ୱାଥ ମହୁ ସହିତ ପାନକଲେ ଅମ୍ଳପିତ୍ତରୁ ଜାତହେବା ଛର୍ଦ୍ଦି ଶୀଘ୍ର ନାଶ

ଅଶ୍ୱତ୍ଥ ବଲ୍କଂ ସଂଶୁଷ୍କଂ ଦଗ୍ଧନିର୍ବାପିତଂ ଜଲେ ।
ତଜ୍ଜଲଂ ପାନମାତ୍ରେଣ ଛର୍ଦ୍ଦିଂ ଜୟତି ଦୁର୍ଜ୍ଜୟାଂ ।

* ଅପସ୍ମାର ରୋଗେ *

କୁଷ୍ମାଣ୍ଡକ ରସଂ ଦତ୍ତ୍ୱା ମଧୁକଂ ପଦ୍ଦେଷୟେତ୍ତ୍ରିହ ।
ଅପସ୍ମାର ବିନାଶାୟ ତତ୍ ପିବେତ୍ତ୍ରିବାସରାନ୍ ।
ଗୋସର୍ପିଃ ସାଧିତଂମୂତ୍ର ଦଧି କ୍ଷୀର ଶକୃଦ୍ରବୈଃ ।
ଚାତୁର୍ଥିକ ଜ୍ୱରୋନ୍ମାଦ ସର୍ବାପସ୍ମାର ନାଶନଂ ।

* ଗୁଲ୍ମରୋଗ *

ତ୍ରିକଟୁକ ମଜମୋଦା ସୈନ୍ଧବଂ ଜୀରକେ ଦ୍ୱେ ।
ସମଧରଣଧୃତାନା ମଷ୍ଟମୋ ହିଙ୍ଗୁଭାଗଃ ।
ପ୍ରଥମ କବଳ ଭୁକ୍ତଂ ସର୍ପିଷା ଚୂର୍ଣ୍ଣମେତ
ଜ୍ଜନୟତ ଜଠରାଗ୍ନିଂ ବାତଗୁଲ୍ମଂ ନିହନ୍ତି ।

---

ହୁଏ । ଅଶ୍ୱତ୍ଥ ବୃକ୍ଷର ଗୁଣ୍ଡି ଶୁଖାଇ ଜଳରେ ବତୁରାଇ ସେହି ପାଣି ପିଇଲେ ଦୁର୍ଜ୍ଜୟ ଛର୍ଦ୍ଦି ନାଶଯାଏ ।

ପୁରୁଣା ପାଣିକଖାରୁ ରସରେ ଯାଠିମହୁ ବାଟି ତାହାକୁ କଖାରୁ ରସ ସହିତ ବାଳକକୁ ସାତ ଦିନ ପିଆଇଲେ ତାହାର ଅପସ୍ମାର ରୋଗ ଦୂରହୁଏ । ଅନ୍ୟଚ ଗୋରୁ ମୂତ୍ର, ଦହି, ଦୁଗ୍ଧ, ଗୋବରରସ, ଘିଅ ଏହି ସବୁ ଏକତ୍ର ସିଦ୍ଧ କରି ବାଳକକୁ ପିଆଇଲେ ଚାତୁର୍ଥିକଜ୍ୱର, ଉନ୍ମାଦ ଓ ଅପସ୍ମାର ରୋଗ ଦୂରହୁଏ ।

ଶୁଣ୍ଠୀ, ମରିଚ, ପିପଲୀ, ଅଜମୋଦା, ସୈନ୍ଧବଲୁଣ, ଜୀରା, କଳାଜୀରା ଏହି ସବୁ ଦ୍ରବ୍ୟ ସମାନ ଭାଗ ଆଣି ତହିଁରେ ଅଠେଗ ହିଙ୍ଗୁ ମିଶାଇବ । ଏହି ହିଙ୍ଗ୍ୱାଷ୍ଟକ ଚୂର୍ଣ୍ଣକୁ ଘିଅ ସହିତ ଭୋଜନ ଆଗରୁ ଖାଇ ପରେ ଭୋଜନ କଲେ ବାତଗୁଲ୍ମ ନାଶଯାଏ ଏବଂ ଜଠରାଗ୍ନି ଉଦ୍ଦୀପ୍ତ ହୁଏ ।

### ✲ ଶୂଳରୋଗେ ✲

ଧାନ୍ୟକଃ ପୌଷ୍କରଂ ହିଙ୍ଗୁ ଯବକ୍ଷାରୋ ଯବାନିକା
ଲବଣଂ ତ୍ରିତୟଂ ପଥ୍ୟା ବିଡ଼ଙ୍ଗଂ ସମଭାଗକଂ ।
ନିବୃ ନିଭାଗଂ ତଚ୍ଚୂର୍ଣ୍ଣଂ ମୁଷ୍ଣବାରେଣ ଯଃ ପିବେତ୍ ।
ଗୁଲ୍ମାଧ୍ମାନ ମବାତାଂଶ୍ଚ ଶୂଳମାଶୁ ବ୍ୟପୋହତି ।
ନିହନ୍ତି ସ୍ୱର୍ଜିକା ଚୂର୍ଣ୍ଣଂ ଶୂଳଘ୍ନଂ କୋଷ୍ଣବାରିଯୁକ୍ ।

### ✲ ନେତ୍ରରୋଗେ ✲

ମନଃଶିଳା ଚନ୍ଦନ ଲୋଧ୍ରପଥ୍ୟା ରସାଞ୍ଜନୈର୍ମୁସ୍ତନିଶାମସ୍ତାଦିଭିଃ ।
ସଗୈରିକାଦ୍ଭିର୍ବିହିତଃ ପ୍ରଲେପୋ ବହିଃ ପ୍ରସନ୍ନୋ ନୟନେ କରୋତି ।
ସସୈନ୍ଧବଂ ଲୋଧ୍ରମଥାଜ୍ୟଭୃଷ୍ଟଂ ସୌବୀର ପିଷ୍ଟଂ ସିତବସ୍ତ୍ରବଦ୍ଧଂ ।
ଆଶ୍ଚୋତନଂତ ନୟନସ୍ୟ କୁର୍ଯ୍ୟା କଣ୍ଡୂଂ ଚ ଦାହଂ ଚ ରୁଜଂ ଚ ହନ୍ୟାତ୍ ।

---

ଧନିଆ, ପୁଷ୍କରମୂଳ, ହିଙ୍ଗୁ, ଯବକ୍ଷାର, ଅଜମୋଦା, ସୈନ୍ଧବଲୁଣ, ସୌବର୍ଚ୍ଚଳଲୁଣ, ବିଟଲୁଣ, ହରଡ଼ା, ବିଡ଼ଙ୍ଗ, ଏହି ସବୁ ଦ୍ରବ୍ୟ ସମାନ ଭାଗ । ନିଶୋଥ [ତିହୁଡ଼ି] ତିନିଭାଗ ଏହାକୁ ଚୂର୍ଣ୍ଣ କରି ଗରମପାଣି ସହିତ ଗୁରମାସା ଚୂର୍ଣ୍ଣ ପିଇଲେ ଗୁଳ୍ମରୋଗ, ଆଧ୍ମାନ, ଅନିବାତ ଓ ଶୂଳରୋଗ ତତ୍କାଳ ଦୂର ହୁଏ । ଶୁଣ୍ଠୀ, ମରିଚ, ପିପଳୀ, ସାଜିକ୍ଷାର, ଏହି ସବୁ ଦ୍ରବ୍ୟକୁ ଚୂର୍ଣ୍ଣ କରି ଗରମ ଜଳ ସହିତ ଗୁରମାଷା ଚୂର୍ଣ୍ଣ ପାନକଲେ ଶୂଳରୋଗ ଦୂର ହୁଏ ।

ମନଃଶିଳା, ଲାଲଚନ୍ଦନ, ଲୋଧ, ହରଡ଼ା, ରସାଞ୍ଜନ, ନାଗରମୋଥ, ହଳଦୀ, କୁଡ଼, ବାହାଡ଼ା, ଗେରୁ ଏହି ସବୁ ଦ୍ରବ୍ୟକୁ ଚୂର୍ଣ୍ଣ କରି ଜଳରେ ଘଷି ଜଳ ସହିତ ବାଟି ଆଖି ପତା ଉପରେ ଲେପଦେଲେ ଆଖି ନିର୍ମଳ ହୁଏ ।

ଘିଅରେ ଭଜା ହୋଇଥିବା ସୈନ୍ଧବ ଲୁଣ, ଲୋଧ, ଏ ଦୁଇ ପଦାର୍ଥକୁ କାଞ୍ଜିପାଣିରେ ବାଟି ମାଡ଼ା କରିବ । ଶୁକ୍ଳ କନାରେ ସେହି ମାଡ଼ାକୁ ବାନ୍ଧି, ପରେ କାଞ୍ଜି ପାଣିରେ ବୁଡ଼ାଇ ଆଖିରେ ପକାଇଲେ ଅକ୍ଷିର କଣ୍ଡୁ, ଦାହ, ପୀଡ଼ା, ସବୁ ନାଶ ହୋଇଯାଏ ।

ଶଙ୍ଖସ୍ୟ ଭାଗା ଶ୍ଚତ୍ୱାର ସ୍ତଦର୍ଦ୍ଧା ଚ ମନଃଶିଳା
ମନଃଶିଳାର୍ଦ୍ଧଂ ମରିଚଂ ମରିଚାର୍ଦ୍ଧା ଚ ପିପ୍ପଳୀ ।
ବାରିଣା ତିମିରଂ ହନ୍ତି ହ୍ୟର୍ବ୍ବୁଦଂ ହନ୍ତିମସ୍ତୁନା ।
ପିଚ୍ଚିଟଂ ମଧୁନା ହନ୍ତି ସ୍ତ୍ରୀ କ୍ଷୀରେଣ ଚ ଦୁନ୍ଧତଂ ।

❋ କର୍ଣ୍ଣରୋଗେ ❋

ସ୍ୱବର୍ଣ୍ଣପତ୍ରାର୍କ ରସଂ ଚ କଟୁତୈଳେନ ପଚେତ୍ତଂ ଲଶୁନେନ ଯୁକ୍ତଂ ।
କର୍ଣ୍ଣବ୍ୟଥା ପୂତି ରୁଜାଦି ହର୍ବଂ ଚକ୍ତଂ ଯଥା ଭିଷଜ ଲୋହିତାକ୍ଷଃ ।

❋ ମୁଖରୋଗେ ❋

ମନ୍ଦୋଷ୍ଣଂ ଧାରୟେତ୍ କ୍ଷୁଦ୍ରିଂ ହିଙ୍ଗୁ ଦନ୍ତାନ୍ତରେ ସ୍ଥିତଂ ।
ତେନ ପ୍ରଣାଶମୁତ୍ୟାଶୁ କ୍ରିମିଦଂଶଂ ମହାଗଦଂ ।
ପଟୋଳ ନିମ୍ବ ଜମ୍ବାମ୍ର ମାଳତୀ ନବପଲ୍ଲବୈଃ ।
ପଞ୍ଚପଲ୍ଲବଜଃ କ୍ୱାଥୋ ଗଣ୍ଡୂଷେ ମୁଖପାକଜିତ୍ ।

—ଃଃ୦ଃଃ—

ଶଙ୍ଖନାଭି ୪ ଭାଗ, ମନଃଶିଳା ୨ ଭାଗ, ମରିଚ ୧ ଭାଗ, ପିପ୍ପଳୀ ଅର୍ଦ୍ଧ ଭାଗ । ଏହି ସବୁ ଦ୍ରବ୍ୟ ଜଳରେ ବାଟି ଆଖିରେ ପକାଇଲେ ଅର୍ବ୍ବୁଦ ନାଶ କରେ । ଦହି ପାଣିରେ ବାଟି ପକାଇଲେ ପଟଳ ନାଶକରେ । ମହୁ ସହିତ ବାଟି ପକାଇଲେ ଆଖିର ଜଳସ୍ରାବ ବନ୍ଦହୁଏ ଏବଂ ସ୍ତ୍ରୀ କ୍ଷୀର ସହିତ ବାଟି ପକାଇଲେ ମାଂସବୃଦ୍ଧି, ଫୁଲ ଇତ୍ୟାଦି ରୋଗ ଦୂର ହୁଏ ।

ପାଚିଲା ଅର୍କପତ୍ର ରସ ଓ ରସୁଣ ଏହାକୁ ସୋରିଷ ତେଲରେ ମିଶାଇ ମନ୍ଦ ଅଗ୍ନିରେ ପାକ କରି କର୍ଣ୍ଣରେ ପକାଇଲେ କର୍ଣ୍ଣର ପୀଡ଼ା ଏବଂ ପୂଯ୍ସ୍ରାବ ଆଦି ସକଳ ରୋଗ ଦୂରହୁଏ ।

ପଟୋଳ ପତ୍ର, ନିମ୍ବ ପତ୍ର, ଜାମୁ ପତ୍ର, ଅମ୍ବ ପତ୍ର, ମାଳତୀ ପତ୍ର ଏହି ସବୁ ପତ୍ରକୁ କ୍ୱାଥ କରି 'କୁଳୁକୁଚା' କଲେ ମୁଖପାକ ରୋଗ ଦୂରହୁଏ ।

—ଃ୦ଃଃ—

✻ ବାଛୁଆ ରୋଗେ ✻

ବାଡ଼ୁଅଳା ପତ୍ର ଓ ମୂଷାକାନପତ୍ର ଏ ଉଭୟଙ୍କୁ ପେଷିବେ ବାଟି ଚୂନରେ ଘୋଳି ରସ ବାହାର କରିବ । ସେ ରସରେ ଶୁକ୍ଳ ଖଇର ମିଶାଇ ଦୁଇରତି ପ୍ରମାଣେ ପିଆଇଲେ ପିଲାଙ୍କ ବାଛୁଆ ରୋଗ ଦୂର ହୁଏ ।

✻ ଅନାସି ରୋଗେ ✻

ଅସ୍ୱନ୍ଧ ଚେର, ମଞ୍ଜୁଆତି ଚେର, ମୃଦୁଷ୍ଟି ଚେର, ବ୍ରହ୍ମଯଷ୍ଟି ଚେର, ଘୁଟୁଣା ଚେର, ପୁନାବ ଛାଲି, କଣ୍ଟେଇକୋଳି ଚେର, ପାଷାଣଭେଦ ମୂଳ, ପାନୁଅର ମୂଳ, ସାନ ଝୁମୁକା ମଞ୍ଜି, ଚନ୍ଦନ, ମହାବଡ଼ାମୂଳ, ଏହି ସବୁଙ୍କୁ ଏକତ୍ର ଚୂର୍ଣ୍ଣ କରି ଦୁଇ ରତି ପ୍ରମାଣେ ଖୁଆଇଲେ ସକଳ ପ୍ରକାର ଅନାସି ଶୀଘ୍ର ଦୂର ହୋଇଯାଏ ।

✻ ବ୍ରଣରୋଗେ ✻

ଗୋଟିଏ ଚିକ୍କଣ ପତ୍ରରେ ଗୁଆଘିଅ ପୁରାଇ ନିଆଁରେ ବସାଇବ ଏବଂ ଏଥିରେ କେତେଗୁଡ଼ିଏ ଗଇଣ ପତ୍ର ପକାଇବ । ପତ୍ରଗୁଡ଼ିକ ଯେତେବେଳେ ପୋଡ଼ିଯିବ ସେତେବେଳେ ଘିଅକୁ ନିଆଁରୁ ଓହ୍ଲାଇ ଆଣିବ । ସେହି ଘିଅ ଘା ଉପରେ ମାଲିସ୍ କଲେ ସମସ୍ତ ପ୍ରକାର ଘା ଶୁଖିଯାଏ । ଗଇଣ ପତ୍ର ଅଭାବରେ ଯାଇପତ୍ର ଦିଆଯାଇ ପାରେ । ମୁଖରେ ବାହାରିଥିବା ଘା କୁ ଏହା ବଡ଼ ଉପକାରୀ ଅଟେ । ଶୁଷ୍କ ମଲମ—ଫିଟିକି ଚୂର୍ଣ୍ଣ ଏକ ତୋଳା, ଖଇର ଚାରିଅଣା ଭରି, ଅପୁ ଛପଇସା ଭରି, ଘିଅ ଓ ମହୁ ଅଧ ଛଟାଙ୍କି ଏକତ୍ରରେ ମର୍ଦ୍ଦନ କରି ତୁଳା ବା କନାରେ ଲଗାଇ ଘା ଉପରେ ପକାଇ ଖେଠିଲେ ସମସ୍ତ ପ୍ରକାର ପୁରୁଣା ଘା ଶୁଖି ଯାଏ । ବଦ୍ଧ, ନାଡ଼ୀବ୍ରଣ, ଭଗନ୍ଦର ଓ ଉପଦଂଶ ଆଦି ଘା ଏବଂ ଯେ କୌଣସି ପ୍ରକାର ଶସ୍ତ୍ର ଘା ଶୁଖାଇବା ପାଇଁ ଏହି ମଲମ ଉପଯୁକ୍ତ ଔଷଧ, ଏଥିରେ ସନ୍ଦେହ ନାହିଁ ।

ରକ୍ତଘା—ତୁଳସୀ, କଷାଗୁଆ, ଜଂଘିହରଡ଼ା ଓ ଫଟିକି ଏ ପ୍ରତ୍ୟେକଙ୍କୁ ସମାନ ଭାଗରେ ଆଣି ଉତ୍ତମରୂପେ ପୋଡ଼ି ଅଫିମ ଓ ଦାରୁହଳଦୀ ରସରେ ମର୍ଦ୍ଦନ କରି କ୍ଷତରେ ଲଗାଇଲେ ତୁରନ୍ତ ଘା ଭଲହୁଏ ।

### ✽ ସର୍ବଜ୍ୱର ଝାଡ଼ଣ ✽

ଓଁ ସଂ ସଂ ସଂ ପ୍ରଣବକ ଶିବନାଦଂ, ପ୍ରଜ୍ୱଳ ବାୟୁସ୍ପର୍ଶଂ କଂ କଂ କଂ କଂ ଗୁକୁର ଚନ୍ଦ୍ରଂ ସ୍ୱଂ ସ୍ୱଂ ସ୍ୱଂ ସ୍ୱନକେ ବଳନ୍ତଂ ଠଂ ଠଂ ଠଂ ଜ୍ୱଳକେ ବଳନ୍ତଂ ଲଂ ଲଂ ଲଂ ଲଂ ଲଲଟୋଡ଼ୁ ପୋଡ଼ୁ । ଓଁ ନମୋ ଭଗବତେ ପ୍ରଳୟକାଳ-ଶାରଭଦ୍ରାବତାରସ୍ୟ ଚର୍ଣ୍ଣଶାଳୋ ଭୈରବାୟ, ନାଗଯଜ୍ଞୋ ପବୀତାୟ, ଅନେକ ଗ୍ରହ ନିନାଶାୟୁଂ ବ୍ରହ୍ମା ବିଷ୍ଣୁ ରୁଦ୍ରଗ୍ରହ ବନ୍ଧନାୟୁଂ, ସନ୍ଧ୍ୟାଗ୍ରହ ବନ୍ଧନାୟୁଂ ଅଗ୍ନିଗ୍ରହ ବନ୍ଧନାୟୁଂ, ଅରଣୀ ଗ୍ରହ ବନ୍ଧନାୟୁଂ, ହ୍ରୌଁ ମ୍ରାଁ ମ୍ରୀଁ ମ୍ରୀଁ ଫଟ୍ ଫଟ୍ ସ୍ୱାହା । ହ୍ରୌଁ ଯେ ଯେ ଶର ସର୍ବେ ସର୍ବାୟୁଂ ଭୂତ ପ୍ରେତ ପିଶାଗ୍ରୁଦନାୟୁଂ ଡ଼ାକିନୀ ସାକିନୀ ଦଂଷ୍ଟ୍ରାଂ କରାଳାୟୁଂ ମହା ଦୁର୍ଦ୍ଧର୍ଷାୟୁଂ, ମହା ଉଗ୍ରରୂପାୟୁଂ ବଡ଼ବାନଳ ମୁଖାୟୁଂ, ପରମନ୍ତ୍ର ଛେଦନାୟୁଂ ପରବିଦ୍ୟା ସ୍ତମ୍ଭନାୟୁଂ ଯେ ଯେ ଜ୍ୱର କରତଳାୟୁଂ ଓଁ ମ୍ରାଁ ମ୍ରୀଁ ଫଟ୍ ଫଟ୍ ସ୍ୱାହା । ଓଁ ଦ୍ୱାଦଶ ତୋଳା-ୟୁନାଂ ସପ୍ତୋଦଶ ଡାକିନୀନାଂ, ତକ୍ଷକ, କର୍କୋଟକ, ସମ୍ପଳକ, କୁଳିକ ଜମ୍ବା-ନସ୍ୟ ବଜପ୍ରାନାଁ, ସର୍ବ ବିଷ ନିବାରଣାୟୁଂ, ଓଁ ନମଶିବାୟଂ । ଓଁ ଅର୍ଗଶୂଳ ଶିରଃଶୂଳ, ଗୁଳ୍ମଶୂଳ, ଅକ୍ଷିଶୂଳ, ବାୟୁଶୂଳ, ନିବାରଣାୟୁଂ, ଦାନବ, ଦୈତ୍ୟ, ଡାକିନୀ, ବ୍ରହ୍ମରାକ୍ଷସ, ନିବାରଣାୟୁଂ, ଏକାହିକ, ଦ୍ୱାହିକ, ତ୍ୟାହିକ, ଚାତୁର୍ଥିକ, ପଞ୍ଚବିଂଶତିକ ନିବାରଣାୟୁଂ, ବ୍ରହ୍ମଜ୍ୱର, ବିଷ୍ଣୁଜ୍ୱର, ରୁଦ୍ରଜ୍ୱର, ପିତ୍ତଜ୍ୱର, ବାତ ଜ୍ୱର, କଫଜ୍ୱର ନିବାରଣାୟୁଂ, ହ୍ରୌଁ ମ୍ରାଁ ମ୍ରୀଁ ମ୍ରୁଁ ଜାଗ୍ରତ ଜାଗ୍ରତ, ଚଟ୍ ଚଟ୍ ଚଟ୍ ଫଟ୍ ଫଟ୍ ଫଟ୍ ହରାୟୁଂ ହ୍ରୌଁ ମ୍ରାଁ ମ୍ରୀଁ ଶ୍ରୀଁ ବଡ଼ ଉଗ୍ରବାଳ ସ୍ତ୍ରୋତସ୍ୟ ଅନୁଷ୍ଟୁପାଭ୍ୟାଂ ନମଃ କରତଳ କମଳାୟ ନମଃ । ଓଁ ଫଟେ ସ୍ୱାହା ।

### ✽ ଅକ୍ଷିଧରା ଛୁଡ଼ିବା ମନ୍ତ୍ର ✽

ଓଁ ଫୁଲର ବୋଲି ପର୍ବତ ତହୁଁ ଜନ୍ମିଲା ଆକ୍ଷି ବଥ, ବନ୍ଧା ଛୁଟିକା ରହ ଯା, ପଥର ପାଣି ହୋଇ ଯା, ଯା ଯା ନଯା ବୋଲି କାହାର ଆଜ୍ଞା କୁସିକେସି ମହାଦେବଙ୍କର କୋଟି କୋଟି ଆଜ୍ଞା । ଏହି ମନ୍ତ୍ରରେ ୩ ଥର ଫୁଙ୍କିବ ।



## * ନିକଣ୍ଠ୍ୟାଦ ଚୂର୍ଣ୍ଣ *

ନିକଣ୍ଠୁ ଗ୍ରନ୍ଥିକଂ ବ୍ରାହ୍ମୀ ରେଣୁକା କଟ୍ଫପୁଷ୍କରଂ ।
ଲବଙ୍ଗମଶ୍ୱଗନ୍ଧା ଚ କସତଂ ହବୁଷା ଶଠୀ ।
ରାସ୍ନା ଶ୍ୱେତବଚ୍ଚ ଶୃଙ୍ଗୀ ସବ ମେକନ ଚୂର୍ଣ୍ଣୟେତ୍ ।
ସନ୍ନିପାତେ ମହାବାତେ ଚୂର୍ଣ୍ଣମେବଂ ସଦାହୃତଂ ।

## * ସିତୋପଲାଦ୍ୟ ଚୂର୍ଣ୍ଣଂ *

ସିତୋପଲାଷୋଡ଼ସ୍ୟ ସ୍ୟାଦଷ୍ଟୌ ସ୍ୟାଦ୍ବଂଶରୋଚନା
ପିପ୍ପଲୀ ସ୍ୟାଚ୍ଚତୁଃ କର୍ଷା ଏଳା ଚ ଦ୍ୱ୍ୟୁ କର୍ଷିକା ।
ଏକ କର୍ଷା ଚ ତ୍ୱକ୍ସ୍ରାର୍ଯ୍ୟା ଚୂର୍ଣ୍ଣୟେତ୍ସର୍ବମେକତଃ ।
ସିତୋପଲା ଦ୍ୟକଂ ଚୂର୍ଣ୍ଣଂ ମଧୁସର୍ପିର୍ଯୁତଂ ଲିହେତ୍ ।
କାଶଶ୍ୱାସକ୍ଷୟହରଂ ହସ୍ତପାଦାଙ୍ଗ ଦାହଜତ୍ ।
ମନ୍ଦାଗ୍ନି ଶୁଷ୍କଜିହ୍ୱାଂ ଚ ପାର୍ଶ୍ୱଶୂଳ ମରୋଚକଂ ।
ଜ୍ୱରମୂର୍ଦ୍ଧ୍ୱଗତଂ ରକ୍ତଂ ପିତ୍ତମାଶୁ ବ୍ୟପୋହତି ।

---

ଶୁଣ୍ଠୀ, ମରିଚ, ପିପ୍ପଳୀ, ପିପ୍ପଳୀମୂଳ, ବ୍ରାହ୍ମୀ. ରେଣୁକାମଞ୍ଜି, ଅକରକରା, ପୁଷ୍କରମୂଳ, ଲବଙ୍ଗ, ଅଶ୍ୱଗନ୍ଧା, ଚିରାଇତା, ହ୍ରୀବେର, ଗନ୍ଧଶୁଣ୍ଠୀ, ରାସ୍ନା, ବଚ, କକଡ଼ାଶୃଙ୍ଗୀ ଏହି ସକଳ ଏକତ୍ର ଚୂର୍ଣ୍ଣ କରି ସେବନ କଲେ ସନ୍ନିପାତ, ଘୋର ବାତବ୍ୟାଧି ଅତିଶୀଘ୍ର ଦୂରହୁଏ ।

ମିଶ୍ରି ୧୬ କର୍ଷ, ବଂଶରୋଚନା ୮ କର୍ଷ, ପିପ୍ପଳୀ ୪ କର୍ଷ, ଏଳାଇଚ ୨ କର୍ଷ, ତେଜପତ୍ର ୧ କର୍ଷ ଏହାକୁ ଚୂର୍ଣ୍ଣ କରି ମହୁ ସହିତ ସେବନ କଲେ କାଶ, ଶ୍ୱାସ, କ୍ଷୟ ଦୂର କରେ, ହାତ ପାଦ ଦାହ ଦୂର କରେ, ମନ୍ଦାଗ୍ନି, ଜିହ୍ୱା ଶୁଷ୍କ, ପାର୍ଶ୍ୱଶୂଳ, ଅରୁଚି, ଜ୍ୱର, ଊର୍ଦ୍ଧ୍ୱଗତ ରକ୍ତବିକାର, ପିତ୍ତ ବିକାର ଏହି ସକଳ,ସେସଙ୍କୁ ସିତୋପଲାଦ୍ୟ ଚୂର୍ଣ୍ଣ ଶୀଘ୍ର ଦୂର କରେ ।

❋ ଶଙ୍ଖାଦ ଚୂର୍ଣ୍ଣଂ ❋

ଶଙ୍ଖଚୂର୍ଣ୍ଣଂ ସଲବଣଂ ସହିଙ୍ଗୁ ବ୍ୟୋଷ ସଂଯୁତଂ ।
ଉଷ୍ଣୋଦକେନ ସଂପୀତଂ ହନ୍ତି ଶୂଳ ତ୍ରିଦୋଷଜଂ ।

❋ ଶୂଳରୋଗେ ଲେପଃ ❋

ମଦନସ୍ୟ ଫଲଂ ତକ୍ତାଂ ପିଷ୍ଟ୍ୱା କାଞ୍ଜିକବାରିଣା ।
କୋଷ୍ଣଂ କୁର୍ଯ୍ୟା ନାଭିଲେପଂ ଶୂଳଶାନ୍ତି ର୍ଭବେତ୍ତତଃ ।
ପୁଷ୍କରଂ ଶାବରଂଶୃଙ୍ଗ କୁଷ୍ଠଂ ବିଶ୍ୱୌଷଧଂ ତଥା ।
ଉଷ୍ଣୋଦକେନ ସଂପିଷ୍ଟୋ ଲେପଃ ଶୂଳ ବିନାଶକୃତ୍ ।

❋ ଶିରୋର୍ତ୍ତି ଲେପଃ ❋

କୁଷ୍ଠ ମେରଣ୍ଡ ତୈଳେନ ଲେପଃ କାଞ୍ଜିକ ପେଷିତଃ
ଶିରୋର୍ତ୍ତି ବାତଜାଂ ହନ୍ୟା ତ୍ପୁଷ୍ପଂ ବା ମୁଚୁକୁନ୍ଦଜଂ ।
ଦେବଦାରୁ ନତଂ କୁଷ୍ଠଂ ନଳଦଂ ବିଶ୍ୱଭେଷଜଂ ।
ସକାଞ୍ଜିକଃ ସ୍ନେହଯୁକ୍ତୋ ଲେପୋ ବାତ ଶିରୋର୍ତ୍ତିନୁତ୍ ।
ଧାତ୍ରୀ କସେରୁ ହ୍ରୀବେର ପଦ୍ମ ପଦ୍ମକ ଚନ୍ଦନୈଃ ।
ଦୂର୍ବୋଶୀର ନଳାନାଂ ଚ ମୂଳୈଃ କୁର୍ଯ୍ୟା ପ୍ରଲେପନଂ ।
ଶିରୋର୍ତ୍ତିଂ ପିତ୍ତଜାଂ ହନ୍ୟା ଦ୍ରକ୍ତପିତ୍ତ ରୁଜସ୍ତଥା ।

---

ଶଙ୍ଖଚୂର୍ଣ୍ଣ, ସୈନ୍ଧବଲୁଣ, ହିଙ୍ଗୁ, ଶୁଣ୍ଠୀ, ମରିଚ, ପିପ୍ପଳୀ ଏହି ସବୁ ଚୂର୍ଣ୍ଣ କରି ଗରମଜଳ ସହିତ ପାନ କଲେ ତ୍ରିଦୋଷଜନିତ ଶୂଳ ନାଶଯାଏ ।

ମୈନଫଳ, କନ୍ଦୁରୀ ଏହାକୁ କାଞ୍ଜିପାଣିରେ ବାଟି ଉଷ୍ଣ କରି ନାଭି ଉପରେ ଲେପ ଦେଲେ ଶୂଳ ନିବାରିତ ହୁଏ । ପୁଷ୍କରମୂଳ, ସମ୍ବରଶିଙ୍ଗ, କୁଡ଼, ଶୁଣ୍ଠୀ, ଏହାକୁ ଗରମ କରି ଲେପ ଦେଲେ ଶୂଳରୋଗ ଦୂରହୁଏ ।

କୁଡ଼କୁ ଜଡ଼ା ତେଲରେ, କାଞ୍ଜିପାଣିରେ ବାଟି ଲେପଦେଲେ ବାତଜ ଶିରଃପୀଡ଼ା ଦୂର ହୁଏ । ଅଥବା ମୁଚୁକୁନ୍ଦ ଫୁଲ ବାଟି ଲେପଦେଲେ ଶିରଃପୀଡ଼ା ଦୂର ହୁଏ । ଦେବଦାରୁ, ତଗରପାଦ, କୁଡ଼, ଜଟାମାଂସୀ, ଶୁଣ୍ଠୀ ଏହାକୁ କାଞ୍ଜି ପାଣିରେ ବାଟି ତେଲରେ ମିଶାଇ ଲେପ ଦେଲେ ବାତଜଶିରଃପୀଡ଼ା ଦୂରହୁଏ ।

ହରେଣୁ ନତଶୈଳେୟଂ ମୁସ୍ତୈଳାଗୁରୁଦାରୁଭିଃ ।
ମାଂସୀ ରାସ୍ନା ସଚୂର୍ଣ୍ଣ ଲେପଃ ଶ୍ଳେଷ୍ମ ଶିରୋର୍ତ୍ତିନୁତ୍ ।
ମରୀଚ କୁଷ୍ଠ ମଧୂକଂ ବୃହତ୍କୁଷ୍ଠୋତ୍ପଲୈ ସ୍ତଥା ।
ଲେପଃ ସକାଞ୍ଜିକଃ ସ୍ନେହଃ ସୂର୍ଯ୍ୟାବର୍ତ୍ତାର୍ଦ୍ଧଭେଦୟୋଃ ।
ଶୁଣ୍ଠୀ ଚନ୍ଦନ ମେରଣ୍ଡ ଜଟାଲେପଃ ଶିରୋର୍ତ୍ତିନୁତ୍ ।
ରାଜିକାଭିଃ ସର୍ଷପୈଶ୍ଚ ଶୁଣ୍ଠ୍ୟାଥ ମରିଚୈରଥ ।

---

ଅଳା, କଶେରୁ, କୁରୁବକ୍ଷି, ପଦ୍ମକାଠ, କମଳ, ଚନ୍ଦନ, ଦୁବ, ଉଶୀର, ନଳ, ନିମ୍ବମୂଳ ଏହାକୁ ବାଟି ଲେପ ଦେଲେ ପିତ୍ତଜ ଶୀରଃପୀଡ଼ା ଦୂର ହୁଏ ଓ ରକ୍ତ-ପିତ୍ତ ରୋଗ ନାଶକରେ । ରେଣୁକାମଞ୍ଜି, ତଗରପାଦ, ପାଷାଣଭେଦୀ, ମୁଥା, ଏଳାଇଚ, ଅଗୁରୁ, ଦେବଦାରୁ, ଜଟାମାଂସୀ, କାଳମୂଳ, ଏହାକୁ ବାଟି ଲେପ ଦେଲେ କଫଜ ଶୀରଃପୀଡ଼ା ଦୂର ହୁଏ । ମରିଚ, କୁଡ଼, ଯାଠିମଧୁ, ଗୁଇଁକାଠ, ପିପ୍ପଳୀ ଏହାକୁ କାଞ୍ଜିପାଣିରେ ବାଟି ତେଲରେ ମିଶାଇ ଲେପ ଦେଲେ ଅଧ-କପାଳ, ସୂର୍ଯ୍ୟାବର୍ତ୍ତ ଶିରଃପୀଡ଼ା ଦୂର ହୁଏ । ଶୁଣ୍ଠୀ, ଚନ୍ଦନ, କାଳମୂଳ, ଏହାକୁ ବାଟି ଲେପଦେଲେ ଶିରଃପୀଡ଼ା ନାଶହୁଏ । ରାଇ, ସୋରିଷ, ଶୁଣ୍ଠୀ, ମରିଚ, ଏହାକୁ ବାଟି ଲେପ ଦେଲେ ଶିରଃପୀଡ଼ା ଦୂର ହୁଏ ।

ପ୍ରଥମଭାଗ ସମାପ୍ତ ।

— ॥୦॥ —



# ବାଲ ରକ୍ଷା

## ଦ୍ୱିତୀୟ ଭାଗ

— ୧୦୪ —

ପ୍ରଶ୍ନ—ଏଠାରେ ଆହୁରି ଗୋଟିଏ କଥା ପଚାରୁଅଛୁ—ଅଳ୍ପ ଶିଶୁ ବାଳକ ମାନଙ୍କର ଜ୍ୱର, ଅତିସାର ପ୍ରଭୃତି ରୋଗର କି କୌଣସି ବିଶେଷ ଚିକିତ୍ସା ଅଛି ?

ଉତ୍ତର—ବିଶେଷ କୌଣସି ପ୍ରକାରେ ଚିକିତ୍ସା ନାହିଁ, ଜ୍ୱରାଦି ରୋଗରେ ଯେ ସବୁ ଔଷଧାଦି ବଟିକା ବୈଦ୍ୟଶାସ୍ତ୍ରରେ କଥିତ ଅଛି ସେହି ସବୁ ଔଷଧ ଶିଶୁମାନଙ୍କୁ ଦିଆଯାଇ ଥାଏ । ମାତ୍ର ବାଳକର ବୟଃକ୍ରମାଦି ବୁଝି ବିବେଚନା କରି କମ୍ ମାତ୍ରା ଦେବାକୁ ହୁଏ । ଏକ ବର୍ଷ ବୟସ ପର୍ଯ୍ୟନ୍ତ ୮ ଭାଗରୁ ଏକ ଭାଗ, ଏକବର୍ଷ ପରେ ତିନବର୍ଷ ପର୍ଯ୍ୟନ୍ତ ୪ ଭାଗରୁ ୧ ଭାଗ, ତିନ ବର୍ଷ ପରେ ଛ ବର୍ଷ ପର୍ଯ୍ୟନ୍ତ ୨ ଭାଗରୁ ୧ ଭାଗ, ଛ ବର୍ଷଠାରୁ ବାରବର୍ଷ ପର୍ଯ୍ୟନ୍ତ ବିବେଚନା କରି ୧ ଭାଗ ଦେବ । ତହୁଁପରେ ପୂର୍ଣ୍ଣମାତ୍ରାରେ ଔଷଧ ପ୍ରୟୋଗ କରିବା କର୍ତ୍ତବ୍ୟ । ଅଉରି ଗୋଟିଏ ବିଷୟ ଯେ ଦେଶ, କାଳ, ପାତ୍ର, ଓ ରୋଗର ଅବସ୍ଥା ବୁଝି ଚିକିତ୍ସକମାନେ ଔଷଧର ମାତ୍ରା ସ୍ଥିର କରନ୍ତୁ ।

ସ୍ତନ ପାନୀୟ ଶିଶୁଙ୍କର ଚିକିତ୍ସା ସମ୍ବନ୍ଧେ ଯାହା କିଛି ବିଶେଷତ୍ୱ ଅଛି ତାହା କହୁଅଛୁ ଶୁଣ, ଜ୍ୱରାଦି କୌଣସି ରୋଗରେ ଲଙ୍ଘନର ଆବଶ୍ୟକ ହେଲେ ଶିଶୁର ମାତାକୁ ଲଙ୍ଘନ କରାଇବ । ଯଦି ଶିଶୁ ଧାଈଠାରୁ କ୍ଷୀର ଖାଉଥିବ ତାହାହେଲେ ଧାଈକୁ ଲଙ୍ଘନ କରାଇବ । ଶିଶୁ ପକ୍ଷରେ ଲଙ୍ଘନ ଅନିଷ୍ଟକର । ଶିଶୁର ଅନ୍ୟ ସମସ୍ତ ବିଷୟ ନିଷେଧ କରାଯାଇପାରେ । କିନ୍ତୁ ସ୍ତନ୍ୟକ୍ଷୀର କଦାଚ ବାରଣ କରାଯାଇ ପାରେ ନାହିଁ । ମାତ୍ର ମାତାର ଓ ଧାଈର ସ୍ତନ୍ୟ ଦୁଗ୍ଧ ଯଦି ଦୂଷିତ ହୁଏ, ତାହାହେଲେ ଶିଶୁକୁ ସେହି ସ୍ତନ୍ୟ ଦୁଗ୍ଧ ପିଆଇବାକୁ ଦେବ ନାହିଁ । ତାହା ବଦଳରେ ଛେଳି ଦୁଗ୍ଧ ଓ ଗାଭୀ ଦୁଗ୍ଧ ପିଆଇବାକୁ ଦେବ । ଅଳ୍ପ

କାଳ ଜାତ ଶିଶୁ ସ୍ତନ୍ୟ ଦୁଗ୍ଧ ପାନ ନକଲେ ଅଳା ଓ ହଳଦୀ ଚୂର୍ଣ୍ଣ କରି ଘିଅ ଓ ମହୁ ମିଶାଇ ବାଳକର ଜିହ୍ୱାରେ ଘସିବ । ଯେଉଁ ଶିଶୁ ସ୍ତନ୍ୟ ପାନ କରି ବାନ୍ତି କରି ପକାଏ ତାହାକୁ ବୃହତ [କଣ୍ଟାବେଙ୍ଗଳା] ଓ ଅଙ୍କୋଳ ଫଳର ରସ ଖୁଆଇବ । ଆଉ ଦୁଗ୍ଧ ଖାଇ ବାନ୍ତି କରି ପକାଇଲେ ଦୁଗ୍ଧରେ ତିନି ଗୁଣ ଟୋପା ଚୂନପାଣି ମିଶାଇ ତାହାକୁ ପିଆଇବ ।

ସ୍ତନ ଦୁଗ୍ଧ ଅଭାବରେ ଛେଳି ଦୁଗ୍ଧ ପିଆଇବ । ବାଳକର ଗଳାରେ କଫ ବସିଲେ ଶୁଣ୍ଠୀ, ପିପ୍ପଳୀ, ମରିଚ, ହରଡ଼ା, ହଳଦୀ, ବଚ, ଏହି ସବୁ ଦ୍ରବ୍ୟକୁ ବାଟି ଉପଯୁକ୍ତ ପରିମାଣରେ ଦୁଧ ସଙ୍ଗେ ମିଶାଇ ସେହି ଦୁଧ ଖୁଆଇବ ।

ଅମ୍ବ ଟାକୁଆ ଭିତର କୋଇଲି, ଖଇ ଓ ସୈନ୍ଧବ ଲୁଣ ଏକତ୍ର ବାଟି ମହୁ ସହିତ ଚଟାଇ ଖୁଆଇଲେ ବାଳକର ବାନ୍ତି ବନ୍ଦ ହୁଏ ।

ଚିନି, ମହୁ ଓ ଲେମ୍ବୁରସ ସଙ୍ଗରେ ପିପ୍ପଳୀ ଓ ମରିଚ ଚୂର୍ଣ୍ଣ ଏହି ସମୁଦାୟ ମିଶ୍ରିତ କରି ବାଳକକୁ ଖୁଆଇଲେ ବାଳକର ହିକ୍କା ଓ ବାନ୍ତି ନିବାରିତ ହୁଏ ।

ବାଳକର ନାଭି ଉଠିଲେ ଖପ୍ରେ ମାଟିକୁ ନିଆଁରେ ଗରମ କରି ଏବଂ ତାହାକୁ ଦୁଧରେ ଭିଜାଇ ସେହି ଗରମ ଥିବା ମାଟିଖଣ୍ଡ ଦ୍ୱାରା ନାଭିରେ ସେକ ଦେବ—ନାଭି ପାଚିଲେ ହଳଦୀ ଏକତୋଳା ଲୋଧ ଏକ ତୋଳା ପ୍ରିୟଙ୍ଗୁ ଏକ ତୋଳା ଯଠିମହୁ ଏକ ତୋଳା ଏ ସମସ୍ତକୁ ବାଟି ସୋରଷ ତେଲ ତୋ ୧୪-ଳାରେ ପାକ କରି ନାଭିରେ ଲଗାଇବ ।

ଚତୁର୍ଭଦ୍ରିକା—ବାଳକର ଜ୍ୱର, ଅତିସାର, ଶ୍ୱାସ, କାସ ଓ ବମନରେ ବିଶେଷ ଉପକାର । ମୁଥା, ପିପଳୀ, ଅତୁରସୀ, କକଡ଼ାଶୃଙ୍ଗି, ଏହି ସମୁଦାୟ ଚୂର୍ଣ୍ଣକୁ ମହୁ ସହିତ ଚଟାଇ ଖୁଆଇଲେ ବିଶେଷ ଉପକାର ।

ଲବଙ୍ଗ ଚତୁଃସମ—ଲବଙ୍ଗ, ଜାଇଫଳ, ଜୀରା, ଟାଙ୍ଗଣାଖଇ, ଏହି ଚାରି ଗୋଟି ଦ୍ରବ୍ୟର ଚୂର୍ଣ୍ଣ ସମାନ ଭାଗରେ ଏକତ୍ର କରି ଖାଇବାକୁ ଦେବ । ବାଳକମାନଙ୍କର ଆମାତିସାରରେ ଏହା ଅତି ଉତ୍କୃଷ୍ଟ ଔଷଧ ।

ଡାଳିମ୍ବ ଚତୁଃସମ—ଜାଇଫଳ, ଜୀରା, ଲବଙ୍ଗ, ଟାଙ୍ଗଣାଖଇ ଏହି ଚାରି ଗୋଟି ଦ୍ରବ୍ୟକୁ ଚୂର୍ଣ୍ଣ କରି ଡାଳିମ୍ବର ମଞ୍ଜି ବାହାର କରି ତହିଁରେ ଏହି ଚୂର୍ଣ୍ଣ

ମିଶାଇ ଏହାକୁ ରଙ୍ଗମାଟି ଗୋଟି ଦେଇ ନଅଁଟିକ ପୁଟପାକ କରି ଛେଳିଦୁଧ ସହିତରେ ଦିଆଇବ । ଏହା ବାଳକମାନଙ୍କର ଅମାତିସାର ରୋଗ ଶୀଘ୍ର ଦୂର କରେ । ମାତ୍ରା ଅର୍ଦ୍ଧରତିଠାରୁ ଦୁଇରତି ପର୍ଯ୍ୟନ୍ତ ।

ବଣି ଓ ଯଷ୍ଟିମଧୁ, ଏ ଉଭୟକୁ ବାଟି ସେଥିରେ ଅଳ୍ପ ରାଶିତେଲ, ଚିନି, ମହୁ, ଏହି ସମୁଦାୟ ମିଶାଇ ଖୁଆଇଲେ ଶିଶୁମାନଙ୍କର ରକ୍ତସ୍ରାବ ନିବାରିତ ହୁଏ ।

ଅଙ୍କୋଲ ମୂଳ ଓ ଲଘ ମୂଳକୁ ଚାଉଳଧୁଆ ପାଣିରେ ବାଟି ବାଳକମାନଙ୍କୁ ଦିଆଇଲେ ଦୁର୍ନିବାର ଅତିସାର ଓ ଗ୍ରହଣୀ ପ୍ରଶମିତ ହୁଏ ।

ଶ୍ୱେତ ଜୀରା ଚୂର୍ଣ୍ଣ, ଶ୍ୱେତଝୁଣା ଚୂର୍ଣ୍ଣ, ବେଲପତ୍ର ରସ ସହିତରେ ଅଥବା କେବଳ ଶ୍ୱେତଝୁଣା ଚୂର୍ଣ୍ଣକୁ ଗୁଡ ସହିତରେ ଖୁଆଇଲେ ଶିଶୁମାନଙ୍କର ଆମରକ୍ତ ଓ ତଜ୍ଜନିତ ବେଦନା ନିବାରିତ ହୁଏ ।

ଜାମୁକୋଳିର ରସ, ବା ଜାମୁ ପତ୍ରର ରସ, ଛେଳିଦୁଧ ସମାନ ପରିମାଣରେ ମିଶାଇ ପାନ କରାଇଲେ ଶିଶୁମାନଙ୍କର ଅତିସାର ଗ୍ରହଣୀ ପ୍ରଶମିତ ହୁଏ ।

ଆମ୍ବ, ଅମ୍ବଡା, ଓ ଜାମୁ ଏହି ସବୁ ଗଛର ଛେଲିକୁ ଚୂର୍ଣ୍ଣକରି ମହୁ, ସହିତରେ ଚଟାଇ ଖୁଆଇଲେ ଶିଶୁମାନଙ୍କର ଅତିସାର ବିନଷ୍ଟ ହୁଏ ।

ପିପ୍ପଳୀ, ମରିଚ, ଚିନି, ମହୁ, ଶ୍ରେଷ୍ଠ ଅଳାଇଚ, ସୈନ୍ଧବଲୁଣ ଏହି ସବୁ ଦ୍ରବ୍ୟର ଅବଲେହ ପ୍ରସ୍ତୁତ କରି ଖୁଆଇଲେ ବାଳକମାନଙ୍କର ମୁହଁକୁଞ୍ଚି ପ୍ରଶମିତ ହୁଏ ।

ଦାରୁ ହଳଦୀ, ମୁଥା ଓ ଗେରୁମାଟିକୁ ଛେଳି ଦୁଧରେ ବାଟି ଚକ୍ଷୁ ପତାରେ ପ୍ରଲେପ ଦେଲେ ବାଳକମାନଙ୍କର ଚକ୍ଷୁରୋଗ ନିବାରିତ ହୁଏ ।

ସ୍ତନ୍ୟପାୟୀ ଶିଶୁ ଦୂଷିତ ସ୍ତନ ପାନ କଲେ ତାହାର ଅଜୀର୍ଣ୍ଣାଦି ନାନା ରୋଗ ଜାତ ହୁଏ । ଅତଏବ, ଶିଶୁ ଜନନୀର ବା ଧାଈର ସ୍ତନ୍ୟ ଦୂଷିତ ହେଲେ ତାହା ଶୋଧନାର୍ଥ ପଞ୍ଚାଂଶେ ତାର ମାତାକୁ ବା ଧାଈକୁ ହରିଦ୍ରାଦି ବା ବଚାଦି ଗଣର ପାଚନ ଅବସ୍ଥାବିଶେଷ କରି ଦିଆଇବ । ହରିଦ୍ରାଦି ପାଚନ—ହଳଦୀ, ଦାରୁ

ହଳଦୀ କୃତ୍ତପର୍ଣ୍ଣି, ଇନ୍ଦ୍ରଯବ ଓ ଯାଠିମଧୁ ଏହି ପାଚନ ଦିଅଇବ । ବଚ୍ଛାଦ ପାଚନ—ବଚ, ମୁଥା, ଉତ୍ତୁସୀ, ହରଡ଼ା, ଦେବଦାରୁ, ନାଗେଶ୍ୱର ଏହି ପାଚନ ଦ୍ୱାରା କ୍ଷୀର ସ୍ତନ୍ୟ ପରିଷ୍କାର ହୁଏ ।

ଶୋଧିତ ମନଶିଳା, ଶଙ୍ଖନାଭି, ପିପ୍ପଳୀ, ଶୋଧିତ ରସାଞ୍ଜନ, ମଧୁ, ଏହିତରେ ମର୍ଦ୍ଦନ କରି ବଟୀ ପ୍ରସ୍ତୁତ କରିବ । ଏହାର ଅଞ୍ଜନରେ ବାଳକର ସମସ୍ତ ପ୍ରକାର ଚକ୍ଷୁଃପୀଡ଼ା ବିନଷ୍ଟ ହୁଏ ।

ଫିଟିକରି, ଶୋଧିତ ହରିତାଳ, ଶୋଧିତ ମନଃଶିଳା, ଶୋଧିତଦାରୁହଳଦୀ ଲାକ୍ଷା ରକ୍ତଚନ୍ଦନ, ଗେରୁମାଟି ଏହି ସବୁ ପଦାର୍ଥର ଚୂର୍ଣ୍ଣକୁ ମଧୁ ଏହିତରେ ମିଶାଇ ଅଞ୍ଜନ ଦେଲେ ବାଳକମାନଙ୍କର ଚକ୍ଷୁପଚାରି କ୍ଲେଦଯୁକ୍ତ କଣ୍ଡୁ ପୀଡ଼ନ ପ୍ରଶମିତ ହୁଏ ।

ଖସା ତେଲ ସେ ୧ ର, କଳ୍କ ଦ୍ରବ୍ୟ—ବାଙ୍ଗଅଳା, କୁଡ଼, ହରତାଳ, ଶୋଧିତ ମନଶିଳା ପ୍ରତ୍ୟେକ ୪ ତୋଳା । ପାକ ନିମିତ୍ତ ଜଳ ସେ ୪ ର, ଯଥା ନିୟମରେ ପାକ କରିବ । ବାଳକର କର୍ଣ୍ଣ ପାଚିଲେ ଏହି ତୈଳ ପ୍ରୟୋଗ କରିବ, କର୍ଣ୍ଣର ଯାବତୀୟ ରୋଗ ଉପଶମ ହୁଏ—

ଶିଶୁମାନଙ୍କର ଦାନ୍ତ ଉଠିବାବେଳେ ଉଦରାମୟ, ଜ୍ୱର, ଆକ୍ଷେପବାଧ ନାନା ପ୍ରକାର ପୀଡ଼ା ଉପସ୍ଥିତ ହୁଏ । ସେ ଅବସ୍ଥାରେ ବିଶେଷ ଚିକିତ୍ସା କରି ଶିଶୁକୁ ଯନ୍ତ୍ରଣା ଦେବାର ପ୍ରୟୋଜନ ନାହିଁ । ଦାନ୍ତ ଉଠିଲେ ପୀଡ଼ା ଅପେ ପ୍ରଶମିତ ହୋଇଯିବ । ଘିଅ ପାଉଁସ ଧରି କଳଦନ୍ତମାନଙ୍କୁ ଘଷିଦେଲେ ଶୀଘ୍ର ଦାନ୍ତ ଉଠେ ।

ବାଳକର କଫଜ୍ୱରକୁ

ଶଳନାଫୁଲ, ଭୃଙ୍ଗରାଜ ଫୁଲ ଏହି ଦୁଇ ଫୁଲକୁ ଛେଚି ଦୋର କାଢ଼ି ବେକରେ ଯାରିବ । ପାଟଫୋକ, ଗୋରୋଚନା ପିପ୍ପଳୀ ଚୂର୍ଣ୍ଣ ପଖାଳ ଦେଇ ବାଳକକୁ ଚଟାଇ ଦେଲେ ବାଳକର କଫଜ୍ୱର ଛାଡ଼ଇ ।

ପିଲଙ୍କ ଶୂନ୍ୟ କାଶକୁ

କତକ, ହରିଡ଼ା, ଦ୍ରାକ୍ଷା, ପିପଳୀ ପଖାଳ ଦେଇ ମା କ୍ଷୀରରେ ଘୋରି ଟିକ ପାନ ଦେଲେ ବାଳକର ଶୂନ୍ୟକାଶ ଭଲହୁଏ ।

### ବାଳକର ବାଛରା ପୋଖରି ଉପାୟ

ନାଗର ମୁଥ ଦୁଇଖଣ୍ଡ ଆଣିବ ଗୁଅ ଘିଅରେ ଫୁଟାଇବ ତାହାକୁ ବାଟି କନାରେ ଛାଣିବ ଦୁଇପାନ ଖୁଆଇଲେ ଜଳବର୍ଣ୍ଣ ପୋଖରି ଓ ଶୁଦ୍ଧ ପରି ପୋଖରି ଅବଶ୍ୟ ହେବ ।

ବାଉଁଶିଆ ଚେର, ତାଳଅଳା ଚେର ଏ ଉଭୟକୁ ମା କ୍ଷୀରରେ ବାଟି ସ୍ତନପାନ ଖୁଆଇଲେ ବାଳକର ବାଛରା ପୋଖରି ଭଲହୁଏ ।

### ବାଳକର ପେଟଫୁଲା ଓ ପ୍ରବୃତ୍ତି ନ ହେଉଥିଲେ

ଅପଳନ୍ତ ପୁନାଉବଛର ଚୂଲ, ପାଟପୋଇ, ମୋରେବେନା ଫିମ୍ପୁଲୀ ପତ୍ର ଦେଇ ପାନେ ଓ ଦୁଇପାନ ଖୁଆଇଲେ ବାଳକ ଅବଶ୍ୟ ଭଲ ହବେ ।

### ବାଳକର ପୁନାପ୍ରବୃତ୍ତିକି

ଅପଳନ୍ତ ତ୍ରିମଳିର ଚୂଲ, ଅପଳନ୍ତ ଆମ୍ବ ଚୂଲ ପାଉଁଶିଆ ଫୁଲ ଏ ସମସ୍ତକୁ ଛେଚ ଦୋର କାଢିବ । ଅଳ୍ପ ଶୁଣ୍ଠୀ ଗୁଣ୍ଡ ମିଶାଇ ମା କ୍ଷୀରରେ ସ୍ତନପାନ ଦେଲେ ବାଳକ ଅବଶ୍ୟ ଭଲ ହେବ ।

### ବାଳକର ଅନ୍ଧଣ୍ଡିଆକୁ ଉପାୟ

ଚନ୍ଦ୍ର ଗ୍ରହଣରେ ଅପାମାରଙ୍ଗର ଚେର ଆଣି ରଖିଥିବ । ତାହାକୁ ବିବର୍ଣ୍ଣ ସୂତାରେ ଗୁନ୍ଥାଇ ବାଳକର ବେକରେ ବାନ୍ଧିଲେ ଅନ୍ଧଣ୍ଡିଆ ଭଲହୁଏ ।

### ବାଳକ ରାତ୍ରରେ କାନ୍ଦୁଥିଲେ ନକାନ୍ଦିବା ଉପାୟ

ଇନ୍ଦ୍ରମାରିଷ ପତ୍ର ଅଶଶୋରିଷ ଦେ ଓ ଫଳ ଏହି ତିନିକି ଏକତ୍ର କରି ଶୁଖାଇ ଗୁଣ୍ଡ କରିବ । ସନ୍ଧ୍ୟାବେଳେ ନିଆଁରେ ସେହି ଗୁଣ୍ଡ ପକାଇ ସେହି ଧୁଁଆ ବାଳକ ଦେହରେ ଧୂପ ଦେଲେ ବାଳକ ଆଉ କାନ୍ଦେ ନାହିଁ ଏ ପ୍ରମାଣ ।

ବାଳକର ଜନ୍ମ ଦିବସଠାରୁ ଜ୍ୱର ହୁଏ, କଫ ହୁଏ, କ୍ଷୀର ପିଏନାହିଁ, ଏପରି ରୋଗ ଜାତହେଲେ ପେଡ୍ରପେଡ୍ରିକା ଚେର, ଚଇ ମା କ୍ଷୀରରେ ବାଟି ଦୁଇ ପାନ ବାଳକକୁ ପିଆଇଲେ ଜନ୍ମ ଅନାସୀ ଓ ବାଳକର ସର୍ବରୋଗ ଦୂରହୁଏ ।

### ବାଳକର ବାନ୍ତି କି ଉପାୟ

କଇଁଠଫଳ ରସରେ ଅଳ୍ପ ଅଳାଇଚ ଗୁଣ୍ଡ ମିଶାଇ ବାଳକକୁ ପିଆଇଲେ ବାନ୍ତି ନିବାରିତ ହୁଏ ।

### ବାଳକର ଅପସ୍ମାର ରୋଗେ

ମେଟିଅଙ୍କାଳ ମୂଳ, ବଗୁଡି ମୂଳ, ପିତ୍ତଉଆ, ରଙ୍ଗବାର ଦିନ ଛେଳି ଲଣ୍ଡି ଏଣ୍ଡ୍ରା ଲଞ୍ଚ, ଗୋରୋଚନା, ପାଟପୋକ ଏହି ସବୁକୁ ବାଳକ ମୂତରେ ବାଟି ପିଲାକୁ ତିନି ଥର ଦାନ ଦିଥିଲେ ତାହାର ଅପସ୍ମାର ରୋଗ ଦୂରହୁଏ ।

### ବାଳକର ପାଳି ଜ୍ୱରକୁ

କଳା ତୁଳସୀ ମଞ୍ଜିକୁ ଗୁଣ୍ଡ କରି ମା କ୍ଷୀରରେ ଦେବ ଓ ବାଳକର ଅବସ୍ଥା ଦେଖି ନବାତ ପଣାରେ ଦେବ ।

### ସ୍ତ୍ରୀ ପ୍ରସବ ହେବାକୁ ଉପାୟ

ଅମୃତମଣ୍ଡା ଚେର ଓ ଗୁଡ଼ ପକାଇ ବାଟି ପିଅଇଲେ ସ୍ତ୍ରୀ ପ୍ରସବ ହୁଅଇ ।

ପ୍ରଥମରେ ଭଣ୍ଡା ପଡ଼ିଥିବା କଦଳୀ ଗଛ ମୂଳକୁ ଯାଇ ପୂର୍ବଦିଗକୁ ମୁଖ କରି ଛିଡାହୋଇ ଗୁଆ ଦୂବଚାଉଳ ଦେବ । ବୋଲିବ ହେ ବୃକ୍ଷରାଜ ମୁଁ ଆସିବାର କାର୍ଯ୍ୟ ସିଦ୍ଧି କର । ଏପରି କହି ୭ ଥର ଭୂମି ପ୍ରଣାମ କରିବ । ପରେ ସେହି ଗଛମୂଳରେ ବସି ପୂର୍ବପଟାରୁ ୭ ଖଣ୍ଡ ଚେର ଖୋଳି ଆଣିବ । ବାଟରେ ଆସିଲା ବେଳେ କାହାକୁ କଥା କହିବ ନାହିଁ । ଏକମୁହାଁ ହୋଇ ଆସି ସ୍ତ୍ରୀକୁ ଦେବ । ୫ ଖଣ୍ଡ ମୁଣ୍ଡରେ ଖୋସିବ ଦୁଇଖଣ୍ଡ ଜଳରେ ଚାକି ତାହାର ରସ ଖାଇଲେ ଶୀଘ୍ର ସ୍ତ୍ରୀ ପ୍ରସବ କରଇ ।

### ସ୍ତ୍ରୀର ଫୁଲ ପଡ଼ିବାକୁ

ମାଇକିନା, ସାତୋଟି ଗୁଆଳ ନୁହଁ ତାର ସ୍ତନସ୍ତକୁ ଦେବ । ସେହି ଗୁଆଳ ନେଇ କଦଳୀଗଛ ମୂଳେ ଦେବ । ଖଣ୍ଡେ ଚେର ଆଣି ମୁଣ୍ଡରେ ଟିକିଏ ଅଣ୍ଟାରେ ଟିକିଏ ଏବଂ ତୁଣ୍ଡରେ ଟିକିଏ ଚେର ଥଇଲେ ସ୍ତ୍ରୀର ଫୁଲ ପଡ଼େ ।

### ଗର୍ଭ ଖସିଯାଉଥିଲେ ରହିବା ଉପାୟ

ଅପାମାରଙ୍ଗ ମୂଳ ସାଇ ଏ ଉଭୟକୁ ଆଣି ଅକଟା କନ୍ୟାର ପାଣିରେ ବାଟି ପିଇଲେ ଗର୍ଭ ରହଇ ଏପ୍ରାଣ ।

### ବାଳକ ମୁହଁଚିରୁହାକୁ ଉପାୟ

ଶନିବାର ଦିନ ନଳୁଣିରେ କୁଣ୍ଡାଇ ଗୋଟିଏ କରିବ, ହଳଦିଆ କନା ଖଣ୍ଡେ ପିନ୍ଧାଇବ, ଦୋସଣା ଖଣ୍ଡେ ଦେବ, ମୁଣ୍ଡରେ ସିନ୍ଦୁରଫୋଟା ଦେବ ।

ତତକ୍ଷଣରେ ପିଲାକୁ ମୁଁହ ଚୁମ୍ବାଇବ । କୁଣ୍ଡାଇକ ନେଇ କ୍ଷତଁରେ ପକାଇବ ନୋହିଲେ ବନ୍ଧରେ ପକାଇବ । ଏହିପରି କ୍ରିୟାଦାନ କଲେ ମୁଁହଚୁଁହା ଶୀଘ୍ର ଛାଡ଼ିଯାଏ, ବାଳକ ଆରୋଗ୍ୟ ହୁଏ ।

## ମୁଁହଚୁଁହା ଯୋଗରେ ଉପାୟ

ବେଙ୍ଗସିଲ୍ପ ଦେନ ନୃସିଂହ ମନ୍ତ୍ର ଉପବାସ ରହି ହଜାରେ ଜପ କରିବ ।

ଅଣମାଣ୍ଡିଆ ଚେର, ଗାଈଁଶିଆ ମୂଳ, ଅଳ ଭର ମା ଷୀରରେ ବାଟି ଦୁଇ ତିନପାନ ପିଆଇଲେ ପିଲାର ହଗା ଭଲହୁଏ ।

## ଦୁବୁଲ୍ଲ କଢ଼ିବା ଉପାୟ

ସନିବାର ଦିନ ଶ୍ୱେତ ଦୁବକୁ ଦୂଧ ଘୃଅଳ ଦେଇ ସାତ ଗେଟି ଦୁବ ଅଣିବ ହଳଦ ହାତ ଖଣ୍ଡ, ବରଓଳ ସାତଖଣ୍ଡ, ନୁଣୁନୁଣିକା ଚେର ସାତଖଣ୍ଡ, ଏସବୁ ବାଟି ପିଲାକୁ ହଳଦ ଲଗାଇବା ପରି ଲଗାଇବ ଟୋକୁଚି ପାଟ ଦୋବାଟରେ ପକାଇବ ଶନିବାର କଲେ ଦୁବୁଲ୍ଲ ଯାଏ ମାଁ ମଧ୍ୟ ଏପରି ତିନଥର କଲେ ମାଁ ଠାରୁ ମଧ୍ୟ ଯାଏ । ନୁଣୁନୁଣିକା ସାଗ ଅଲୁଣା ଖରଡ଼ ଖାଇଲେ ଟେଟକୁ ଛାଡ଼ିଯାଏ ।

## ବାଳକ ଅନ୍ନାଧି ର ଉପାୟ

ବନ୍ଧା ଅସ୍ଥନ ମୂଳ, ବରଓଳ, ନୁଣୁନୁଣିକ ଚେର, ଗୋରଚାନା ବଣିଆ ମରିଚ ଏ ସବୁ ସାମାନ୍ୟ ହେମା ଖିରରେ ବାଟି ବାଳକକୁ ଖୁଆଇଲେ ତୁରନ୍ତେକ ଅନାଧି ଛାଡ଼ଇ ।

## ପିଲା ମୁଣ୍ଡରେ ଗର୍ମି ଘାଅକୁ ଉପାୟ

କୁଳକଣ୍ଟା ମୂଳ ପାଣିରେ ଧୋଇବ, ବଣିଅଁ ମରିଚ ବାଟିବ, ଘାରେ ଲେପ ଦେଲେ ଗର୍ମି ଘା ଭଲ ହୁଏ ଅନ୍ୟ ପ୍ରକାର ଅକାନବନ୍ଧ ଚେର ପାଣିରେ ବାଟି ଲେପ ଦେଲେ ଗର୍ମି ଘା ଭଲ ହୁଏ ଓ ପାନ ଅଇର ମୂଳ ବାଟି ଲଗାଇଲେ ଗର୍ମି ଘା ଭଲହୁଏ । ଅର୍ଯୁନ ଗଛର ବାଟି ଘାରେ ଲେପ ଦେଲେ ଗର୍ମି ଘା ଭଲହୁଏ ।

### ପିଲା ଅହଣ୍ଡିଆ କୁ ଉପାୟ

ସନିବାର ଦିନ ଦୁଧ ଗୁଉଳ ଦେଇ ବାସଙ୍ଗ ଚେର ଖଣ୍ଡେ ଆଣିବ ସେହି ଚେରକୁ ତିନବର୍ଣ୍ଣ ସୂତାରେ ବାନ୍ଧି ପିଲା ଅଣ୍ଟାରେ ବାନ୍ଧିଲେ ଅହଣ୍ଡିଆ ନବାଧଇ ।

### ପିଲା ଗଜେଇ କୁ ଉପାୟ

ସନିବାରେ ଦୁଧ ଗୁଉଳ ଦେଇ ସାହାଡ଼ା ଗଛର ଚେର ଆଣିବ ପ୍ରତିଦିନ ମାଁ ଖିରରେ ବାଟି ପିଲାକୁ ଦେଖାଇଲେ ଗଜେଇ କଦାଚ ହୁଏନାହିଁ ।

### ବାଳକ ଯାକୁସି କୁ ଉପାୟ

କଳଉଡ଼ିଆ ଚିଙ୍କ ଉକତ ଯାକୁସିରେ ଲଗାଇଲେ ଭଲହୁଏ, ଓ ଦୁଡ଼ ଅଙ୍କୁସ ପତ୍ର ରସରେ ହଳଦ ଗୋଳି ଯାକୁସିରେ ଲଗାଇଲେ ଯାକୁସି ଭଲହୁଏ ।

### ବାଳକକୁ ଦୃଷ୍ଟି ପଡ଼ିଥିଲେ ଲୁଣମନ୍ତ୍ର

ଓଁ ଈଶ୍ୱର ଦେଲେ ଲୁଣ ପାର୍ବତୀ ଦେଲେ ଛେଦ ଛେଦରେ ଛେଦ କାଟଇ ଭେଦ କାଟଇ ପେଟ ବ୍ୟଥା କାଟଇ ପେଟଫୁଲା କାଟଇ ପରଦୃଷ୍ଟି କାଟଇ ପର ଦୃଷ୍ଟି କାଟଇ ଆପଣା ଦୃଷ୍ଟି କାଟଇ ଅମୁକାର ଲୋକର ଦୃଷ୍ଟି କାଟଇ କାଟ ନୁଣ କାଟ ନକାଟ ବୋଲି କାହାର ଘଣ ଈଶ୍ୱର ପାର୍ବତୀଙ୍କର କୋଟି କୋଟି ଘଣ ଏମନ୍ତେ ତିନଥର ମନ୍ତ୍ରିକ ହାଇ ଲୁଣ ବହିଲେ ଦୃଷ୍ଟି ବୋଲି ଜାଣିବ । ହାଇ ନଆସିଲେ ପେଟବ୍ୟଥା ବୋଲି ଜାଣିବ ହେଙ୍ଗୁ ଟିକିଏ ଦୁଧରେ ଘାରିକ ବାଳକକୁ ପିଆଇଲେ ପେଟ ବ୍ୟଥା ଭଲହୁଏ ।

### ବାଳକକୁ କଫହେଲେ ପରୀକ୍ଷିତ ଚୁଟକା

ଲବ ଅଙ୍କୁଡ଼ି ପତ୍ର ଦୋଗୁଅ କାଢ଼ି ଘିଅରେ ଜାଳିବ ପିପଳ ଚୂର୍ଣ୍ଣରେ ଦେଇ ପିଆଇଲେ ବାଳକ କଫ ଗୁଡ଼ାଇ ଓ ସହସ୍ର ଭେଦ ମକର ରସ ବାହାର କରି ଦୁଧରେ ତାର ପିପଳ ଚୂର୍ଣ୍ଣ ଦେଇ ବାଳକକୁ ପିଆଇଲେ କଫ ଛାଡ଼ଇ ।

### ବାଳକର ଶରୀର ଅରୋଗ୍ୟ ଓ ଗଣ୍ଡିଆ କୁ ଉପାୟ

ସନିବାର ଦିନ ଦୁଧ ଗୁଉଳ ଦେଇ ବର ଗଛରୁ ବଉଳ ସାତଖଣ୍ଡ ଆଣିବ ହଳଦ ସାତଖଣ୍ଡ ପକାଇ ବାଟିବ ପିଲାକୁ ଲଗାଇବ ଏପରି ତିନିବାର କଲେ ବାଳକ ଅରୋଗ୍ୟ ହୋଇ ଶରୀରରେ ପ୍ରଫୁଲ୍ଲିତ ରକ୍ତ ହୁଏ ।

(ନୃସିଂହ ମନ୍ତ୍ର)

ଓଁ ନୃସିଂହ ଯେ ସିଂହ ପାଦତଳେ ଜଳ ବ୍ରହ୍ମାଣ୍ଡ ବାସେବର କର୍ମେ; ଚଣ୍ଡ-ଷଠୀ ଦେବୀ ଦୁର୍ଗାଙ୍କର ଆସନ କର୍ମେ; ଜିହ୍ୱା ଲହ ଲହ ଦେଖି ଦେବ ପଳାଇଲେ; ଆସ୍ଥାନ ଉପରେ ହଙ୍କ ଦେଲି ଲଙ୍କ ଦୁଡ଼ ଖାଇ ବାଉଁଶ ଫୁଲ ଗୁଣ୍ଡ ମାଲେଣୀ ମେ ଡାକ କୁଟ ଆଳୁଣୀ ଭୂତ ପ୍ରେତ ଡାହାଣୀ ଖୁଦୁର ଶୋଷାଣି ଗ୍ରହେ ଛଡ଼େ; ମୋହର ବାଳୁନରସିଂହ ଅଙ୍କରେ ଗ୍ରହେ। ନଛାଡ଼ୁ ବୋଲି କାହାର ଆଜ୍ଞା:-ରଣ ଶ୍ରୀରାମ ଠାକୁରଙ୍କର କୋଟି କୋଟି ଆଜ୍ଞା [ତୁଳସି ଡାଳରେ ଝାଡ଼ିବ ।]

ବାଳକ ଖୁଦୁର କି ଉଦ୍ଧାର ଚେର

ସନବାରେ ଦୁଧଗୁଣ୍ଡଳ ଦେଇ ଚଢ଼ଆ ଚେର ଆଣିବ । ବହୁଥଡ ଚେର ଆଣିବା ମୁସାକାନ ଚେର ଆଣିବ ଏ ତିନଟିକ ଏକତ୍ରିତ କରି ପିଲା ଅଣ୍ଟାରେ ବାନ୍ଧିଲେ ଖୁଦୁର ଦେହରେ ଭେଦ ନପାରଇ ।

ନବଗ୍ରହ ଦୋଷ ଶାନ୍ତି ହେବାକୁ ଚେରଔଷଧ

ସୂର୍ଯ୍ୟପରାଗ ବେଳେ ବୃଦ୍ଧତାରକ ଚେର, ବାଇଡ଼ଙ୍କ ଚେର, ଓ ବହୁଥାଡ ଚେର ନିମନ୍ତ୍ରଣ କରିଆଣି ଥିବା ତାହାକୁ ସର୍ବସନ୍ଧିରେ ଅଷ୍ଟଧାତୁ ତେଉଁରିଆ ତିଆରି କରି ଲଗାଇଲେ ନବଗ୍ରହ ଦୋଷ ଶାନ୍ତ ହୁଏ ।

ହୋମ ସାମାନ୍ୟରେ କରି ଧାରଣ କଲେ ନବଗ୍ରହ ବସନ୍ତରୋଗ ନିବାରଣ ହେବ ।

ଅର୍କସନ୍ଧି ଚେର ଓ ଭଙ୍ଗମହାଳ ଚେରକୁ ନିମନ୍ତ୍ରଣ କରିଆଣି ତମ୍ବା ତେଉଁରିଆରେ ପୂରାଇ ଧାରଣ କରିବାକୁ ଦେଲେ ବସନ୍ତରୋଗ ପ୍ରଶମିତ ହୁଏ ।

ବାଟରେ ଭେଟହେଲେ ପାଣି ଛେଦା ନୃସିଂହ ମନ୍ତ୍ର

(ଏ ମନ୍ତ୍ର ଉପବାସ ରହି ଏକ ଦିନରେ ଜପ କଲେ ସିଦ୍ଧ ହୁଏ ।)

ଓଁ ନରସିଂହ ମହାବୀର ତୋହର ଶୂଳରେ ପୃଥିବୀ ଥିର ଅମୁକାଇ ଦେହରେ ଯେଉଁ ଭେଦ ପଶିଲା ତୋହର ପାଦେ ପଡ଼ି ଲେଉଟାଇଲା । ଦେଶେ ଗାଇ ଗ୍ରାମେ ପଶି ଗ୍ରାମ ଦେବତାଙ୍କ ବନ୍ଧି ଅମୁକାଇ ଦଶଦ୍ୱାର ନିରୋଧି ଡାହେଣି ଚଉଗୁଣି ପିତାଇସୁଣି ଚମାରୁଣି ଭେଟ ହାବଡ଼ା ଯେ ବାହାର କରି ନେଇ, ନନେଇ ବୋଲି କାହାର ଆଜ୍ଞା ଶ୍ରୀ ଶ୍ରୀନୃସିଂହଠାକୁରଙ୍କର କୋଟି

କୋଷ୍ଠ ଅଛି । ଅଙ୍କାଳ ବନ୍ଧର ପାଣିଅଣି ମନ୍ତ୍ରିବ ମୁହଁକୁ ତିନିମୁଠା ପାଣି ମାରିବ ତିନିଗେଳା ପାଣି ପିଆଇବ ଏହି ମନ୍ତ୍ରରେ ତୁଳସି ଡାଳ ଧରି ତିନିଥର ଝାଡ଼ିବ କାଞ୍ଜିପାଣି ମନ୍ଦାର ଫୁଲ ସୁଖୁଆ ନୁଣ ଗ୍ରାମ ଦେବତା ପାଖେ ରଖିବ ।

ଏପରି ମଧ୍ୟ ଧୂପ ଦେବ

ଗୋବ୍ରଳ ମରିଚ ମଞ୍ଜି ଲମ୍ବଦନ୍ତ ଧାତକୀ ହେଙ୍ଗୁ ଶୋଦ୍ଧ ଚୂନ ଏ ସବୁକୁ ଚୂର୍ଣ୍ଣ କରି ନିଆଁରେ ପକାଇ ଧୂପ ଦେବ ତାହାଣି ଭୂତପ୍ରେତାଣ ଗ୍ରହ ପଳାନ୍ତି ।

ଚମ୍ପା ଓଉଁରିଆ

ଶନିବାରେ ଦୁଧଗୁଞ୍ଜଳ ଦେଇ ବାଇଗଣ ଚେର, ବଇଁଚ ଚେର, ମସାଣି ତୁଳସି ଚେର, ଭେଣା ଚେର, ଏ ସବୁ ଶନିବାର ଦିନ ଆଣିବ ଚମ୍ପା ଓଉଁରିଅରେ ଭର୍ତ୍ତି କରି ବେକରେ ବାନ୍ଧିବ ଉପ୍ର ଚମକ ଭୂତ ଡାହାଣୀ ପରିପରିବେ ନାହିଁ

ବାଳକ ଦେହରେ ଶୁଖୁଆ ଝୁଲୁଣି ଛାଡ଼ିବା ଉପାୟ .

ଶନିବାର ଦିନ କୁମ୍ଭାର ମାଟିରେ କୁଣ୍ଢେଇ ଗୋଟିଏ ତିଆରି କରିବ ଯେ ତା ଗୋଟିଏ ତିଆରି କରିବ କୁଣ୍ଢେଇକି ହଳଦିଆ ଲୁଗା ପିନ୍ଧାଇ ଦେଇ ଫୁଲ ଦେଇ ସୁନ୍ଦର ପଗଡ଼ି ଦେଇ, ମନ୍ଦାର ଫୁଲ ଦେଇ ଅଟକ୍ଷତ ଅଗରୁ ଅଣ ସାଜି ଚୂଳ ଥୋଇବ। ସୁଖୁଆ ମୁଣ୍ଡ ଚୋଡ଼ି ଥୋଇବ ନୂଆ ଛେଲୁଅରେ ପର୍ପଟ ଦେଇ କୁଣ୍ଢେଇ ରଖିବ ସେଠାରୁ ଅସି ନୃସିଂହ ମନ୍ତ୍ରରେ ପିଲାକୁ ଝାଡ଼ିବ ଖୁଦୁରୁଖୁଚୁଣ ଭଲହୁଏ ।

ଗୋଟିଏ ପରୀକ୍ଷିତ ଗୁଟିକା

ଦୁଧଖଡ଼ି ନଳ ମୟୂରଚୂଳିଆ ଲବଙ୍ଗ ଜାଇଫଳ ଅଳାଇଚ ସାମାନ୍ୟରେ ଅଫିମ ଏସବୁ ଏକତ୍ରିତ କରି ଖୋଲରେ ପେଷି ମୁଗପରିମାଣେ ବଟିକା କରିବ ଚାଉଳଧୂଆ ମଣ୍ଡ ଓ ମାତା କ୍ଷୀରରେ ଦେଲେ ବାତବଳିଆ ଦୋଷ ଦେହ ଟଳ ଝାଳ ହେବାଠ ଭଲହୁଏ ।

ସ୍ତ୍ରୀର ସନ୍ତାନ ହୋଇ ମରିଯାଉଥିଲେ ତାହାର ଉପାୟ

ଶନିବାରେ ପାନ ଚେର ବେଗୁନିଆ ଚେର ଏ ଦୁହିଁକି ଏକତ୍ରିତ କରି ଚମ୍ପା ଓଉଁରିଆରେ ଭରାଇ ଧୂପଦେଇ ବାମ ବେଣୀରେ ବାନ୍ଧି ଥିଲେ ସନ୍ତାନ ବଞ୍ଚନ୍ତି ଏ ପ୍ରମାଣ ।

## ବାଳକ ଜ୍ୱରକୁ ଉପାୟ

ଅଙ୍କୋଳବୃକ୍ଷ ଚେରକୁ ରବିବାର ଦେ ଧୂପ ଦେଇ ଆଣି ପିଲର ଅଣ୍ଟାରେ ବାନ୍ଧିଲେ ବାଳକର ଭୂତାଦି ଜ୍ୱର ଛାଡ଼ଇ ।

## ପଡ଼ିଗିଳ ଟୁଟ୍‌କା

ପନିଧୂଆ ଚେର ମାତା କ୍ଷୀରରେ ବାଟି ଦୁଇ ଦିନ ଖୁଆଇଲେ ପିଲାଙ୍କର ଜ୍ୱର ଛାଡ଼ଇ ।

## ପିଲାମାନଙ୍କର ଖୁହୁର କୁଅକାଟ ତେଉଁରିଆ

ଶନିବାର ଦିନ ଅପରାଜିତା ଚେର ଓ ଗଙ୍ଗା ତୁଳସୀ ଚେର ନିମନ୍ତ୍ରଣ କରି ଆଣି ତମ୍ବା ତେଉଁରିଆରେ ପୁରାଇ ଧାରଣ କରାଇଲେ ଖୁହୁର ତାହାଣି ଡିଗୁଣି ଦୃଷ୍ଟି ବିନାଶ ହୁଏ ।

## ପିତ୍ତଳା ରୋଗ କୁଅକଟ ତେଉଁରିଆ

ମଙ୍ଗଳବାର ଦିନ ବରୁଣ ଗଛ ଚେର ଓ କଣ୍ଟେଇ କୋଳିଗଛ ଚେର ନିମନ୍ତ୍ରଣ କରି ଆଣି ତମ୍ବା ତେଉଁରିଆରେ ପୁରାଇ ଧାରଣ କରାଇଲେ ପିତ୍ତଳା ରୋଗ ନିବାରଣ ହୁଏ ।

## ବାତଜ୍ୱର ନିବାରଣ ହେବାକୁ ତେଉଁରିଆ

ଚନ୍ଦ୍ରଗ୍ରହଣବେଳେ ଅପାଢ଼ୁଅ ଚେର ଅଙ୍କୋଳବୃକ୍ଷ ଚେର ନିମନ୍ତ୍ରଣ କରି ଆଣି ଅଷ୍ଟ ଧାତୁ ତେଉଁରିଆରେ ପୁରାଇ ଧାରଣ କରିବାକୁ ଦେଲେ ବାତ ଜ୍ୱର ନିବାରଣ ହୁଏ ।

## ପିଶାଚ ଜ୍ୱର ଛାଡ଼ିବାକୁ ତେଉଁରିଆ

ସଂକ୍ରାନ୍ତି ଦିନ ଭଙ୍ଗଶିଳିକ ଚେର ଓ ରଇଷ ଚେର ନିମନ୍ତ୍ରଣ କରି ଆଣି ତମ୍ବା ତେଉଁରିଆରେ ପୁରାଇ ଧାରଣ କରାଇଲେ ପିଶାଚ ଜ୍ୱର ଛାଡ଼ିଯାଏ । ଏ ପ୍ରତ୍ୟକ୍ଷ ଫଳପ୍ରଦ ତେଉଁରିଆ ।

## ନାନା ପ୍ରକାର ପିତ୍ତକଣ୍ଡୁ ଆରୋଗ୍ୟ ହେବାକୁ

କଦଳୀଖାର ଏକତୋଳା, ମହୁଲିଗଛ ଏକତୋଳା, ବାଲୁଚ ଏକତୋଳା ଏ ସମସ୍ତ ଦ୍ରବ୍ୟ ଏକତ୍ର ଚୂର୍ଣ୍ଣ କରି ତହିଁରୁ ଅଡ଼େଇମସା ନଡ଼ିଆତେଲ ବା

ଗୁଆ ଲହୁଣି ଅହୃତ ମିଶାଇ ବେକଠାରୁ ଗୋଡ ପର୍ଯ୍ୟନ୍ତ ସର୍ବାଙ୍ଗ ଲଗାଇ ଏକ ଘଣ୍ଟା ପରେ ଗରମ ଜଳ ସ୍ନାନ କଲେ ପିତକଣ୍ଡୁ ନିବାରଣ ହୁଏ ।

ବାଳକମାନଙ୍କ କାନ ପଶୁ ଭଲହେବାକୁ ଉପାୟ

ଛେଳି ଲେଣ୍ଡି, ମୂଥା, ଦୂଲଣ୍ଡି ମୂଳ, ଏ ସମସ୍ତ ପ୍ରତ୍ୟେକ ଏକ ତୋଳା ଲେଖା ଏ ବାସ୍ୟବେଣା ପତ୍ର ରସ ଓ ଷୋଡଶ ତୋଳ ତେଲରେ ଘସି ନିଆଁରେ ପାକ କରି ଛାଣି ଗରମ ଜଳରେ କାନ ଧୋଇ ସେହି ତେଲକୁ ଦୁଇ ତୋଳା କାନରେ ପକାଇଲେ କାନପଶୁ କର୍ଣ୍ଣକୋଟ ରୋଗ, ଓ କାନକୁଣ୍ଡୁ ଭଲହୁଏ ।

ସ୍ତ୍ରୀମାନଙ୍କର କାଳ ପୁରୁଷ ସ୍ୱପ୍ନ ନିବାରଣ

ଅମାବାସ୍ୟାଦିନ କଳାବିଲୁଆର ଓ ଲଜକୁଳି ଚେର ନିମନ୍ତ୍ରଣ କରି ଆଣି ଅଷ୍ଟ ଧାତୁ ଢ଼େଉଁରିଅରେ ପୁରାଇ ଧାରଣ କରିବାକୁ ଦେଲେ ସ୍ତ୍ରୀମାନଙ୍କର କାଳ ପୁରୁଷ ସ୍ୱପ୍ନ ନିବାରଣ ହୁଏ ।

ପାଳଜ୍ୱର ଛାଡିବାକୁ ଢ଼େଉଁରିଆ

ରବିବାର ଦିନ ବଣ କୋଳଥ ଚେର ଓ ଅପମାରଙ୍ଗ ଚେର ନିମନ୍ତ୍ରଣ କରି ଆଣି ଧାରଣ କରିବାକୁ ଦେଲେ ପାଳଜ୍ୱର ଛାଡିଯାଏ ।

ପାଳିଜ୍ୱରର ଢ଼େଉଁରିଆ

ବଲ ଓ କନ୍ଦ ନୁଡ଼ାରେ ସାନ ବୃକ୍ଷମାନଙ୍କରେ ଏକପ୍ରକାର ପୋକ ଦେଖେ ସେହି ପୋକ ଉପରେ ଭାଙ୍ଗଯାଇ ଥିବ ତା ଭିତରେ ଏକପ୍ରକାର ପୋକ ଅଛି ଶନିବାର ଓ ଶଙ୍କସନ୍ଧ ଦିନ ଧୂପଦେଇ ଆଣି ତମ୍ବା ଢ଼େଉଁରିଆରେ ପୁରାଇ ଲଗାଇଲେ ପାଳିଜ୍ୱର ଛାଡ଼ିଯାଏ ଏପରି ବହୁ ଲକ୍ଷିତ ଢ଼େଉଁରିଆ ।

ସ୍ତ୍ରୀମାନଙ୍କ ସ୍ତନ ରୋଗକୁ

ନିମନ୍ତ୍ରିତ ହେମସାଗ ପତ୍ର ବାଟି ପୋଷରେ ପଙ୍କହୃତ ଲେପଦେଲେ ସ୍ତ୍ରୀମାନଙ୍କର ସ୍ତନରୋଗ ଆରୋଗ୍ୟ ହୁଏ ।

ସ୍ତ୍ରୀମାନେ ଗର୍ଭବତୀ ହେବାକୁ

ଚନ୍ଦ୍ରଗ୍ରହଣବେଳେ ଡ଼ିମ୍ବିରି ମୂଳଙ୍କୁ ନିମନ୍ତ୍ରଣ କରି ଆଣି ରଖିଥିବ, ତାହାକୁ ଗାଈଖୀରରେ ସ୍ତ୍ରୀମାନଙ୍କୁ ଋତୁସ୍ନାନ ଦିନ ପିଆଇଦେଲେ ସ୍ତ୍ରୀମାନେ ଗର୍ଭବତୀ ହୁଅନ୍ତି ।

ବାଳକମାନଙ୍କର ଏକପ୍ରକାର ପୀଡ଼ା ହୁଏ । ଚଳିତ ଭାଷାରେ ତାହାକୁ ପିହୁଳା ରୋଗ କହନ୍ତି । ପିହୁଳା କାହାକୁ କହନ୍ତି ତାହା ସମସ୍ତେ ଜାଣନ୍ତି । ଏହା ଏକପ୍ରକାର ଅପସ୍ମାର ରୋଗ ପରି ଏହା ବଡ଼ କଷ୍ଟଦାୟକ ଓ ବିପଦଜନକ, ବ୍ୟାଧି । ଏହି ପୀଡ଼ା ଆରମ୍ଭ ହେଲେ ବାଳକର ଚକ୍ଷୁ ଓ ମୁଖରେ ଶୀତଳ ଜଳ ସିଞ୍ଚିବ । ପଙ୍ଖା ପବନ କରିବ, ଗୁଡ଼ି ଧରିବ, ପୁରୁଣା ଘିଅ ଦେହରେ ମାଲିସ କରି ଶୁଖିଲା ଲୁଗାରେ ପରିଷ୍କାର କରିବ । ହାତ ଅଣ୍ଟରେ ତାର୍ପିନ୍ ତେଲ ମର୍ଦ୍ଦନ କରିବ ଏବଂ ଗରମ ଜଳରେ ଫୋମେଣ୍ଟ କରିବ । ଜଡ଼ା ତେଲର ଜୋଲାପ ଦେବ ବା ଲୁଣି ଜଳରେ ମଳଦ୍ୱାରରେ ପିଚକା କରି ଦେଇ ଝାଡ଼ା କରାଇବ । ଗଣ୍ଡେ ହଳଦୀକୁ ପୋଡ଼ି ସେହି ହଳଦୀ ଦ୍ୱାରା ଭୂଲତା ଦ୍ରବ୍ୟ ମଧ୍ୟରେ ବସାଇ ଦେବ ।

ପିହୁଳା ସମୟରେ ୨।୩।୪ ଥର ଉପସ୍ଥିତ ହୁଏ । ପିହୁଳାର ବେଗ ଛାଡ଼ି ଗଲେ ଏକ ରତି ବା ଅର୍ଦ୍ଧ ରତି ମକରଧ୍ୱଜ ଦେବ ଓ ରସ ସିନ୍ଦୂର ଏକ ରତି ମଧୁରେ ଦେଇ ଚଟାଇବ ।

ପିହୁଳା ନିବୃତ୍ତି ହେବା ପରେ ଯଦି ବାଳକକୁ ଜ୍ୱର ହୁଏ ତାହାହେଲେ ଅତି ସାବଧାନରେ ଜ୍ୱରର ଚିକିତ୍ସା କରିବ । କାରଣ ଏଥିରେ ପ୍ରାୟ ବିକାର ଉପସ୍ଥିତ ହୋଇ ପ୍ରାଣ ବିନଷ୍ଟ କରେ ।

ବିଶ୍ୱନାଥ ଚିକିତ୍ସା ମତରେ ବାଳକମାନଙ୍କୁ କନ୍ଦାପସ୍ମାର ବୋଲି (ପିହୁଳା) ରୋଗ ବାର ପ୍ରକାର ହୁଏ । ତାହାର ଲକ୍ଷଣ ଓ ଚିକିତ୍ସାଦି କୁହାଯାଉଅଛି ।

ବାଳକର ଜନ୍ମ ଦିବସରେ, ଏକମାସରେ ଓ ୧ ବର୍ଷରେ ନନ୍ଦା ଦେବୀଙ୍କର ଆକ୍ରମଣରେ ମାତୃକା ନନ୍ଦନା ନାମକ ଏକ ପ୍ରକାର ପିହୁଳା ରୋଗ ହୁଏ । ସେ ରୋଗ ପ୍ରବେଶ ମାତ୍ରେ ଶିଶୁକୁ ଜ୍ୱର ହୁଏ । ଶିଶୁର ସବୁ ଅଙ୍ଗ କୁଞ୍ଚିତ ହୁଏ, ଓ ସ୍ତନ ପାନ କରେ ନାହିଁ । ଏହି ରୋଗ ବଡ଼ ଭୟାନକ ଅଟେ ।

ଚିକିତ୍ସା—ନଦୀର ଉଭୟ ତଟରୁ ମାଟି ଆଣି ତହିଁରେ ଗୋଟିଏ ପିତୁଳା ପ୍ରସ୍ତୁତ କରି ଗ୍ରାମର ଶେଷ ପୂର୍ବଦିଗରେ ଥିବା ଚଉଛକି ବାଟରେ ସନ୍ଧ୍ୟାବେଳେ ବସାଇବ । ଶୁକ୍ଳ ପୁଷ୍ପ, ଶୁକ୍ଳ ଧୂପ ପାଞ୍ଚ ଗୋଟି, ଦୀପ ସାତ ଗୋଟି, ଶୁକ୍ଳ ଧ୍ୱଜା ସାତ ଗୋଟି, ଚାଉଳ ସାତ ମୁଠି, ଦହିଦୁଧ, ମାଛ, ମାଂସ, ମଦ, ସାଗ

ଗୋଟି ପାନ ଏ ସମସ୍ତ ଦ୍ରବ୍ୟକୁ ଅଲଗା ଅଲଗା କରି ସରାରେ ରଖିବ, ସେହି ମାଟି କୁଣ୍ଢେଇଙ୍କ ଅଗରେ ରଖି ପାଣି ଛଡ଼େଇବ, ସେଠାରୁ ଆସି ଗୋଟିଏ କଳଶିରେ ଜଳ ପୁରାଇ ଗୋଟିଏ ଅସ୍ତ୍ରପତ୍ର ସେହି କଳଶିରେ ପକାଇବ । ଓଁ ଶାନ୍ତି । ଓଁ ଶାନ୍ତି, ଓଁ ଶାନ୍ତି ଏହି ମନ୍ତ୍ର ପଢ଼ି ସେହି ଅସ୍ତ୍ରପତ୍ର ଧରି ସେହି କଳଶିର ପାଣି ବାଳକ ଉପରେ ତିନିଥର ଛିଞ୍ଚି ଦେବ । ତହିଁଉତ୍ତାରୁ ଶିବନିର୍ମାଲ୍ୟ 'ସୋରଷ' ନିମ୍ବପତ୍ର 'ମେଣ୍ଢାଶିଙ୍ଗ' ଏହି ସବୁ ପଦାର୍ଥଙ୍କୁ ଆଣି ବାଳକକୁ ଧୂପ ଦେବ । ଓଁ ନମୋ ରାବଣାୟ ହନ ହନ ମୁଞ୍ଚ ମୁଞ୍ଚ ସ୍ୱାହା । ଏହି ମନ୍ତ୍ର ପଢ଼ି ବାଳକକୁ ତିନି ଥର ଫୁଙ୍କି ଦେବ । ଏହିପରି ତିନିଦିନ କରି ଚତୁର୍ଥ ଦିନ ଗୋଟିଏ ବ୍ରାହ୍ମଣକୁ ଉତ୍ତମ ଭୋଜନ ଦେବ । ଏଥିରେ ରୋଗ ନିଶ୍ଚୟ ଆରୋଗ୍ୟ ହେବ ।

ବାଳକ ଜନ୍ମର ଦୁଇ ଦିନରେ, ଦୁଇ ମାସରେ, ଦୁଇ ବର୍ଷରେ, ମାତୃକା ଦେବୀଙ୍କର ଅଙ୍କଣରେ ବାଳକକୁ ସୁନନ୍ଦା ନାମକ ଏକ ପ୍ରକାର ପିହୁଳା ରୋଗ ଏହି । ପ୍ରଥମରେ ଜ୍ୱର ହୁଏ, ବାଳକ ଚକ୍ଷୁ ମିଟି ମିଟି କରଇ । ହସ୍ତ-ପାଦ ଏଣେ ତେଣେ କରେ ନିଦ୍ରା ହୁଏ ନାହିଁ । ସର୍ବଦା କାନ୍ଦେ, ସ୍ତନପାନ କରେ ନାହିଁ ।

ଚିକିତ୍ସା—ଚନ୍ଦ୍ରହା ଚୂର୍ଣ୍ଣପରି ନଦୀର ଦୁଇ ପାଖ ତୋଠ ହୁଡ଼ାରୁ ମାଟି ଆଣି ପିତୁଳା ପ୍ରସ୍ତୁତ କରିବ । ସନ୍ଧ୍ୟାବେଳେ ଗ୍ରାମର ପଶ୍ଚିମ କାନ୍ଥ ତିନି ଛକ ଥିବା ବାଟରେ ସେହି ପିତୁଳା ବସାଇବ ତାହାର ପାଖରେ ହଳଦିଆ ବାନା ସାତ ଗୋଟି ପୋତିବ । ସାତଟା ଦୀପ ରଖିବ । ଏକ ମୁଠା ଉଅଗ୍ନିକଳା ଗୁଡ଼, ଦହି ମିଶାଇ ଗୋଟିଏ ସରାରେ ରଖିବ । ସାତଗୋଟି ପାନ ରଖିବ, ସାତ ଗୋଟି ହଳଦିଆ ଫୁଲ ରଖିବ, ଦଶଗୋଟି ଚନ୍ଦ୍ରପିଠା ରଖିବ । ମାଛ, ମାଂସ, ମଦ, ଏହିସବୁ ପଦାର୍ଥକୁ ଭିନ୍ନ ଭିନ୍ନ କରି ସରାରେ ରଖିବ, ପିତୁଳା ଆଗରେ ରଖି ନୈବେଦ୍ୟ କରିବ । ସେଠାରୁ ଆସି ଓଁ ଶାନ୍ତି, ଓଁ ଶାନ୍ତି, ଓଁ ଶାନ୍ତି ଏହି ମନ୍ତ୍ର ପଢ଼ି ସେହି କଳଶିର ପାଣି ଅସ୍ତ୍ରପତ୍ରରେ ତିନିଥର ଛିଞ୍ଚି ଦେବ । ଶିବନିର୍ମାଲ୍ୟ, ସୋରଷ, ମୁଣ୍ଡବାଳ, ମଞ୍ଜୁରଚୁମ ଘିଅ ଏହିସବୁ ପଦାର୍ଥର ବାଳକକୁ ଧୂପ ଦେବ । ଓଁ ନମୋ ରାବଣାୟ ହନ ହନ ମୁଞ୍ଚ ମୁଞ୍ଚ ହୁଁ ଫଟ୍ ସ୍ୱାହା । ଏହି ମନ୍ତ୍ରରେ

ବାଳକକୁ ତିନିଥର ଝାଡ଼ି ଦେବ । ଏହାର ତିନି ଦିନ କରିବ ପରେ ଦିନ ଗୋଟିଏ ବ୍ରାହ୍ମଣଙ୍କୁ ଉତ୍ତମ ଭୋଜନ ଦେବ ।

ଜନ୍ମର ଦ୍ୱିତୀୟ ଦିବସ, ଦ୍ୱିତୀୟ ମାସ, ଦ୍ୱିତୀୟ ବର୍ଷରେ ଯେ ପିଡ଼ା ରୋଗ ହୁଏ ତାହାକୁ ପୂତନା ନାମରେ କଥିତ ହୁଏ । ଏଥିରେ ପ୍ରଥମରେ ଜ୍ୱର ହୁଏ ଦେହ କମ୍ପେ ହାତ ମୁଠା ମୁଠା କରେ ସର୍ବଦା କାନ୍ଦେ ସ୍ତନ ପାନ କରେ ନାହିଁ ହାତଗୋଡ଼ ଝାଡ଼େ ତରଟି ଗୃହ୍ନ ମୂର୍ଚ୍ଛିତ ହୁଏ ।

ଚିକିତ୍ସା—ପୂର୍ବୋକ୍ତ ଅନୁସାରେ ପିତୁଳା ପ୍ରସ୍ତୁତ କରି ସନ୍ଧ୍ୟାବେଳେ ଗ୍ରାମର ଶେଷ ଦକ୍ଷିଣ ଦିଗରେ ତିନି ଛକ ବାଟରେ ବସାଇବ । ଉକ୍ତ ପିତୁଳା ଆଗରେ ସାତ ଗୋଟି ବଟକ, କୁକୁଡ଼ା ମାଂସ, ମଦ, ଏହିସବୁ ନୈବେଦ୍ୟ ଦେବ ଏବଂ ସାତ ଗୋଟି ଲାଲଫୁଲ, ରକ୍ତଚନ୍ଦନ, ସାତଗୋଟି ପାନ, ପାଞ୍ଚ ଗୋଟି ରଙ୍ଗ ଟୋକା ରଖି ପୂଜା କରିବ । ସେଠାକୁ ଆସି ବାଳକ ଆଗରେ ଗୋଟିଏ କଳସିରେ ପାଣି ରଖିବ ଗୋଟିଏ ପ୍ରଦୀପ ଜଳାଇବ ଶାନ୍ତି ମନ୍ତ୍ର ପଢ଼ି ବାଳକ ଉପରେ ହସ୍ତପଦ୍ମ ଧରି ତିନିଥର ଛୁଇଁବ ।

ମନ୍ତ୍ର ଓଁ ଶାନ୍ତିଃ ଓଁ ଶାନ୍ତିଃ ଓଁ ଶାନ୍ତିଃ ଓ ଗୁଗୁଳ, ଶିବନିର୍ମାଲ୍ୟ, ରାଇ ସୋରିଷ, ନିମ୍ବପତ୍ର, ମେଣ୍ଢାସିଂଘ ଏହି ସବୁରେ ବାଳକକୁ ଧୂପ ଦେବ । ଏହି ମନ୍ତ୍ରରେ ଝାଡ଼ିବ । ଓଁ ନମୋ ରାବଣାୟ ହନ ହନ ନାଶୟ ନାଶୟ ସ୍ୱାହା । ଏ ମନ୍ତ୍ରରେ ବାଳକକୁ ତିନିଥର ଝାଡ଼ିବ । ଏହିପରି ତିନି ଦିନ କରି ଚତୁର୍ଥ ଦିନ ଗୋଟିଏ ବ୍ରାହ୍ମଣ ଭୋଜନ ଦେବ ।

ଶିଶୁର ଜନ୍ମର ତୃତୀୟ ଦିନ, ତୃତୀୟ ମାସ ଓ ତୃତୀୟ ବର୍ଷରେ ଯେ ପିଡ଼ା ରୋଗ ହୁଏ ତାହା ମୁଖମଣ୍ଡିତିକା ନାମରେ କଥିତ ହୁଏ । ଏଥିରେ ପ୍ରଥମରେ ଜ୍ୱର ହୁଏ । ସ୍ତନପାନ କରେ ନାହିଁ । କାନ୍ଦେ । ହାତଗୋଡ଼ ଝାଡ଼େ ତରଟି ଶୁଙ୍ଖେ । ବେକ ସଣ୍ଢା ଭାଙ୍ଗି ଗଳାଦିର ଇତସ୍ତତଃ ଚାଳନା କରେ ଏବଂ ହାତ ମୁଠା ମୁଠା କରି ମୂର୍ଚ୍ଛିତ ହୁଏ ।

ଚିକିତ୍ସା - ପୂର୍ବୋକ୍ତ ମତେ ନଦୀର ଉଭୟ ପାର୍ଶ୍ୱ ମାଟିର ପିତୁଳା କରି ଗ୍ରାମର ଶେଷ ଉତ୍ତର ଦିଗରେ ତିନି ଛକ ସ୍ଥାନରେ ସନ୍ଧ୍ୟାବେଳେ ବସାଇବ ।

ସେଠାରେ ଦଶୋଟି ରଙ୍ଗବାନା ପୋତିବ । ରକ୍ତ ଚନ୍ଦନ, ସାତଗୋଟି ନାଳକଇଁ, ସାତ ଗୋଟି ପାନ, ଗ୍ରଇଗୋଟି ଦୀପ ଅର୍ପଣ କରିବ, ରଜଦଣ୍ଡ ଚଡଉ ପିଠା, ମାଂସ, ମଦ, ମାଛ ଏହିସବୁ ପଦାର୍ଥ ପିତୁଳାଠାରେ ପାଣି ଛଡ଼ାଇବ । ସେଠାରୁ ଆଣି ବାଳକକୁ ଶାନ୍ତି ମନ୍ତ୍ରରେ ପାଣି ଛିଞ୍ଚିବ । ପୂର୍ବପରି ଶାନ୍ତି ମନ୍ତ୍ରରେ ଛିଞ୍ଚାଇବ । ତହିଁ ଉତ୍ତାରୁ ମେଣ୍ଢା ସିଂଘ, ନିମ୍ବପତ୍ର, ଗୁଗ୍ଗୁଳ, ବଇ ସୋରିଷ, ଶିବନିର୍ମାଲ୍ୟ ଏହିସବୁ ଦ୍ରବ୍ୟରେ ବାଳକକୁ ଧୂପ ଦେବ । ଏହି ମନ୍ତ୍ରରେ ଝାଡ଼ିବ । ଓଁ ନମୋଭଗବଣାୟ ହନ ହନ ମଥ ମଥ ସ୍ୱାହା । ଏହିପରି ତିନି ଦିନ କରିବ । ଚତୁର୍ଥ ଦିନରେ ବ୍ରାହ୍ମଣ ଭୋଜନ କରାଇବ ।

ଶିଶୁର ଜନ୍ମର ପାଞ୍ଚ ଦିନରେ ପାଞ୍ଚ ମାସରେ ପାଞ୍ଚ ବର୍ଷରେ ଯେ ପିହୁଳା ରୋଗ ହୁଏ, ତାହାକୁ କଟପୂତନା କହନ୍ତି । ଏ ରୋଗରେ ପ୍ରଥମରେ ଜ୍ୱରହୁଏ; ସ୍ତନପାନ କରେ ନାହିଁ, ସର୍ବଦା କାନ୍ଦେ, ମୋଡ଼ି ହୁଏ, ହାତ ମୁଠା ମୁଠା କରେ, ମୂର୍ଚ୍ଛା ହୁଏ ।

ଚିକିତ୍ସା—କୁମ୍ଭାର ଘର ଚକରୁ ମାଟି ଆଣି ସେଥିରେ ଗୋଟିଏ ପିତୁଳା କରିବ । ସେହି ପିତୁଳାକୁ ଗ୍ରାମର ଐଶାନ୍ୟ କୋଣରେ ତିନି ଛକ ସ୍ଥାନରେ ସନ୍ଧ୍ୟାରେ ରଖିବ ଧୋବ ବାନା ପାଞ୍ଚଗୋଟି ସେହି ସ୍ଥାନରେ ପୋତିବ । ଶୁକ୍ଳ ଫୁଲ, ଶୁକ୍ଳ ଚନ୍ଦନ, ପାଞ୍ଚ ଗୋଟି ପାନ, ପାଞ୍ଚ ଗୋଟି ଦୀପ ଏହି ପଦାର୍ଥ ସେହି ପିତୁଳା ଉପରେ ଦେବ । ପାଞ୍ଚ ଗୋଟି ବରି ବଡ଼ା, ମାଛ, ମାଂସ, ମଦ ଏହି ଦ୍ରବ୍ୟମାନ ପାଣି ଛଡ଼ାଇବ, ସେଠାରୁ ଆସି ବାଳକକୁ ପୂର୍ବୋକ୍ତ ଶାନ୍ତି ମନ୍ତ୍ରରେ ବାଳକକୁ ପାଣି ଛିଞ୍ଚିବ । ଗୁଗ୍ଗୁଳ, ଶିବ ନିର୍ମାଲ୍ୟ, କୁରୁବଲି, ନିମ୍ବପତ୍ର, ସାପ କାତି, ଘିଅ ଏହି ପଦାର୍ଥମାନଙ୍କରେ ବାଳକକୁ ଧୂପ ଦେବ । ଏହି ମନ୍ତ୍ରରେ ବାଳକକୁ ଝାଡ଼ ଦେବ । ଓଁ ନମୋଭଗବଣାୟ ହନ ହନ ଚୂର୍ଣ୍ଣୟ ଚୂର୍ଣ୍ଣୟ ସ୍ୱାହା, ଏହିପରି ତିନି ଦିନ କରିବ । ଚତୁର୍ଥ ଦିନ ଗୋଟିଏ ବ୍ରାହ୍ମଣ ଭୋଜନ ଦେବ ।

ଶିଶୁର ଜନ୍ମର ଛ' ଦିନ, ଛ' ମାସ ଛ' ବର୍ଷରେ ଯେଉଁ ପିହୁଳା ରୋଗ ହୁଏ, ପ୍ରଥମରେ ଜ୍ୱର ହୁଏ, ଆହାର କରେ ନାହିଁ, ଆପଣା ଦେହକୁ ଛିଣ୍ଡେଇ ଖମ୍ଭୁଡ଼ୁ ଥାଏ, ଉଠାଇଲେ ଉପରକୁ ତରାଟି ଚାହେଁ ଓ ମୁର୍ଚ୍ଛିତ ହୁଏ ।

ଚିକିତ୍ସା—ଉଅଗୃଉଳକୁ ବାଟି ସେହି ସୁଗିଳ୍ପ ପିଠଉରେ ଗୋଟିଏ ପିତୁଳା ପ୍ରସ୍ତୁତ କରିବ, ତାହାକୁ ଖରାବେଳେ ବା ରାତ୍ର ଶେଷରେ ଗ୍ରାମର ଶେଷରେ ଅଗ୍ନି କୋଣରେ, ତିନି ଛକି ବାଟରେ, ବସାଇବ, ଏବଂ ତାହା ନିକଟରେ ଦଶଗୋଟି ହଳଦିଆ ବାନା ପୋତିବ, ରଙ୍ଗଫୁଲ, ଧୋବ ଫୁଲ, ହଳଦିଆ ଫୁଲ, ଦଶ ଗୋଟି ଦୀପ, ଏହି ଦ୍ରବ୍ୟମାନ ପିତୁଳାକୁ ଅର୍ପଣ କରିବ । ଦଶଟା ଚିତଉପିଠା, ଦଶ ଗୋଟି ବରବଡ଼ା, ମଦ, ମାଛ, ମାଂସ ଏ ପଦାର୍ଥମାନ ପିତୁଳାଠାରେ ପାଣି ଛଡ଼ାଇବ । ସେଠାରୁ ଆସି ବାଳକ ଉପରେ ପୂର୍ବୋକ୍ତ ଶାନ୍ତିଦୋକ ମନ୍ତ୍ରରେ ପାଣି ଛିଞ୍ଚିବ ! ରସୁଣ, ଶିବନିର୍ମାଲ୍ୟ, ଗୁଗ୍ଗୁଳ, ମୋଢ଼ଷ, ସାପକାତି, ଘିଅ ଏହି ପଦାର୍ଥମାନଙ୍କରେ ବାଳକକୁ ଧୂପ ଦେବ । ଏହି ମନ୍ତ୍ରରେ ଝାଡ଼ିବ, ଓଁ ନମୋ ରାବଣାୟ ଚୂର୍ଣ୍ଣୟ ଚୂର୍ଣ୍ଣୟ ହନ ହନ ସ୍ୱାହା ଏହିପରି ତିନି ଦିନ କରିବ । ଗୃହ ଦିନ ବ୍ରାହ୍ମଣ ଭୋଜନ ଦେବ ।

ଜନ୍ମର ସାତ ଦିନରେ, ସାତ ମାସରେ, ସାତ ବର୍ଷରେ ବାଳକକୁ ଯେଉଁ ପିହୁଳା ରୋଗ ହୁଏ ତାହାକୁ ଶୁଷ୍କ ରେବତିକା କହନ୍ତି । ଏଥିରେ ପ୍ରଥମରେ ଜ୍ୱର ହୁଏ । ସର୍ବଦା କାନ୍ଦେ, ହାତ ମୁଠା ମୁଠା କରି ମୂର୍ଚ୍ଛିତ ହୁଏ ।

ଚିକିତ୍ସା—ନଦୀର ଉଭୟ ତଟରୁ ମାଟି ଆଣି ଗୋଟିଏ ପିତୁଳା କରିବ । ଗ୍ରାମର ଶେଷ ପଶ୍ଚିମ ଦିଗର ତିନି ଛକି ବାଟରେ ସନ୍ଧ୍ୟାବେଳେ ଗୋଟିଏ ମାଟି ଶରା ଉପରେ ସେହି ପିତୁଳାକୁ ବସାଇବ—ଧୋବ ବାନା ତେର ଗୋଟି ପୋତିବ, ରଙ୍ଗଫୁଲ, ଧୋବ ଫୁଲ, ଚନ୍ଦନ, ପାନ, ସାତଗୋଟି ଦୀପ ଗୃଉଳରେ ସିନ୍ଦୂର ମିଶାଇ ଏହି ଦ୍ରବ୍ୟମାନ ପିତୁଳା ଉପରେ ଦେବ । ତେର ଗୋଟି ଚକୁଳି ପିଠା, ତେର ଗୋଟି ଚିତଉପିଠା, କ୍ଷିରିଷା, ମଦ, ମାଂସ, ମାଛ ଏହି ପଦାର୍ଥ ମାନ ଗୋଟିଏ ସରରେ ରଖି ପିତୁଳାଠାରେ ନୈବେଦ୍ୟ ଦେବ । ସେଠାରୁ ଆସି ବାଳକ ଉପରେ ପୂର୍ବ ପରି ଶାନ୍ତି ମନ୍ତ୍ରରେ ପାଣି ଛିଞ୍ଚାଇ ଦେବ । ମେଣ୍ଢାସିଙ୍ଗ, ବେଣାଚେର, ଘିଅ ଏ ପଦାର୍ଥରେ ବାଳକକୁ ଧୂପ ଦେବ । ଏହି ମନ୍ତ୍ରରେ ଝାଡ଼ିବ ଓଁ ନମୋ ରାବଣାୟ ତ୍ରୈଲୋକ୍ୟ ବଦ୍ ରାବଣାୟ ଦନ୍ତଦଶ ମୋକ୍ଷଣାୟ

ଜ୍ୱଳ ଜ୍ୱଳ ହ୍ରୁଁ ଫଟ ସ୍ୱାହା । ଏହପରି ତନ ଦନ କରବ । ଚତୁର୍ଥ ଦନରେ ବ୍ରାହ୍ମଣ ଭୋଜନ କରାଇବ ।

ବାଳକର ଜନ୍ମର ଆଠ ଦନରେ, ଆଠ ମାସରେ, ଆଠବର୍ଷରେ ବାଳକକୁ ଯେ ପିଲ୍ଲା ରୋଗ ହୁଏ, ତାହାକୁ ଅର୍ଜ୍ଜକା ରୋଗ କହନ୍ତ । ପ୍ରଥମେ ଜ୍ୱର ହୁଏ, ଅହାର କରେ ନାହିଁ, ଦେହ ଦୁର୍ଗନ୍ଧ ହୁଏ, ହାତ ମୁଠା ମୁଠା କରେ, ଉଡ଼ ମୋଡ଼ ହୁଏ, ଉପରକୁ ଅଖି ଚରାଣ୍ଟ ଗୃହ ମୂର୍ଚ୍ଛିତ ହୁଏ ।

ଚକିତ୍ସା—ନଦୀର ଉଭୟ ତଟରୁ ମୃତ୍ତିକା ଅଣି ପିତୁଳା ପ୍ରସ୍ତୁତ କରବ; ଉଷାକାଳରେ ଗ୍ରାମର ପଶ୍ଚିମ ଦଗ ଶେଷରେ ତନ ଛକ ସ୍ଥାନରେ ଗୋଟିଏ ସରାରେ ସେହ ପିତୁଳାକୁ ରଖିବ । ସେହ ପିତୁଳା ପାଖରେ ରଙ୍ଗବାନା ହଳ-ଦଅ ବାନା, ହଳଦଅ ଫୁଲ ଚନ୍ଦନ ଓ ଧୂପ ଦେବ, ଚଉଳ ପିଠା, ଦୁଗ୍‌ଧ, ମଦ, ମାଛ, ମାଂସ ଏ ଦ୍ରବ୍ୟମାନ ଗୋଟିଏ ସରାରେ ରଖି ସେହ ପିତୁଳାକୁ ନୈବେଦ୍ୟ କରବ । ସେଠାରୁ ଅସି ପିଲା ଉପରେ ପୂର୍ବୋକ୍ତ ଶାନ୍ତ ମନ୍ତ୍ରରେ ପାଣି ଛିଞ୍ଚିବ । (ଧୂପ) ବରାଡ଼ ବିଷ୍ଠା, ସୋରଷ, ଘିଅ ଏକତ୍ର କରି ବାଳକକୁ ଧୂପ ଦେବ । ଓଁ ନମୋ ରାବଣାୟ ତ୍ରୈଲୋକ୍ୟ ବଦ୍ ରାବଣାୟ ଦନ୍ତଦସ ମୋକ୍ଷଣାୟ ଜ୍ୱଳ ଜ୍ୱଳ ହ୍ରୁଁ ଫଟ୍ ସ୍ୱାହା । ଏହ ମନ୍ତ୍ରରେ ବାଳକକୁ ଝାଡ଼ ଦେବ, ଏହପର ତନଦନ କର ବ୍ରାହ୍ମଣ ଭୋଜନ ଯଥା ଶକ୍ତିରେ କରିବ ।

ଜନ୍ମର ନଅ ଦନରେ, ନଅ ମାସରେ, ନଅ ବର୍ଷରେ ବାଳକକୁ ଯେ ପିଲ୍ଲା ରୋଗ ହୁଏ ତାହାକୁ ଘଣ୍ଟକା କହନ୍ତ । ପ୍ରଥମରେ ଜ୍ୱର ହୋଇ ଦେହ କମ୍ପେ, କାନ୍ଦ ହୁଏ, ହାତ ମୁଠା ମୁଠା କରେ, ବେଶୀ ନଦ୍ରା ହୁଏ, ଉପରକୁ ଚରାଣ୍ଟ ଗୃହ ମୂର୍ଚ୍ଛିତ ହୁଏ ।

ଚକିତ୍ସା—ନଦୀର ଦୁଇ ଧାରର ମାଟି ଅଣି ପିତୁଳା ପ୍ରସ୍ତୁତ କରିବ । ସେହ ପିତୁଳାକୁ ଶୁକ୍ଳ କନା ପିନ୍ଧାଇବ ସନ୍ଧ୍ୟାରେ ଗ୍ରାମ ଶେଷରେ ତନ ଛକ ସ୍ଥାନରେ ଉତ୍ତର ଦଗରେ ଗୋଟିଏ ସରାରେ ପିତୁଳା ରଖି ବସାଇବ । ଚନ୍ଦନ, ପାନ ଶୁକ୍ଳ ଫୁଲ ଦଶ ଗୋଟି, ଶୁକ୍ଳ ବାନା ତେର ଗୋଟି, ଚଉଳ, ମଦ, ମାଛ, ମାଂସ ଏହ ପଦାର୍ଥମାନ ନୈବେଦ୍ୟ କରିବ । ଗୋରୁ, ସିଙ୍ଗ, ସୋରିଷ, ନିମ୍ବ,

ପତ୍ର, ଘିଅ, ଏହି ଗୁଡ଼ିକ ଜିନିଷରେ ବାଳକକୁ ଧୂପ ଦେବ, ଏହି ମନ୍ତ୍ରରେ ଝାଡ଼ିବ ଓଁ ନମଃ ରାବଣାୟ ଚତୁର୍ଭୁଜାୟ ହନ ହନ ହନ ସ୍ୱାହା ଏହିପରି ତିନି ଦିନ କରି ଚତୁର୍ଥ ଦିନରେ ବ୍ରାହ୍ମଣ ଭୋଜନ କରାଇବ ।

ବାଳକ ଜନ୍ମର ଦଶ ଦିନରେ, ଦଶ ମାସରେ, ଦଶ ବର୍ଷରେ ଯେଉଁ ପିତୁଳା ରୋଗ ହୁଏ ତାହାକୁ କରୁଡା ଅପସ୍ମାର କୁହାଯାଏ । ପ୍ରଥମରେ ଜ୍ୱର ହୁଏ, ମୁହୁର୍ମୁହୁ ଚିତ୍କାର ହୋଇ କାନ୍ଦେ, ଭିଡ଼ ମୋଡ଼ ହୁଏ, ବହୁତ ପରିଶ୍ରା କରେ, ଉପରକୁ ତରଛି ଚାହିଁ ମୂର୍ଚ୍ଛା ହୁଏ ।

ଚିକିତ୍ସା—ସମୁଦ୍ର କୂଳର ମାଟିରେ ପିତୁଳା ପ୍ରସ୍ତୁତ କରିବ, ସନ୍ଧ୍ୟାରେ ଗ୍ରାମ ଶେଷର ବାୟୁକୋଣ ଗୃହ ଛକରେ ସରାରେ ପିତୁଳା ରଖିବ, ରଙ୍ଗଫୁଲ ପାନ ପାଞ୍ଚ ଗୋଟି, ରଙ୍ଗବାନା ପାଞ୍ଚ ଗୋଟି, ରକ୍ତ ଚନ୍ଦନ, ସାତ ଗୋଟି ଧୂପ, ପାଞ୍ଚ ପ୍ରକାର ପିଠା, ଚିତଉ ପିଠା ଅଲଗା କରିବ, ମାଛ, ମାଂସ, ମଦ, ପୂଜା କରିବ । ସେଠାରୁ ଆସି ପୂର୍ବୋକ୍ତ ଶାନ୍ତି ମନ୍ତ୍ରରେ ବାଳକକୁ ପାଣି ଛିଞ୍ଚିବ, ବିରାଡ଼ି ଲୋମ, ଗୋ ସିଙ୍ଗ, ଗୋ ମାଂସ, ରସୁଣ, ଘିଅ, କାଉଡ଼ିଷ୍ଟା ଏହି ଜିନିଷରେ ବାଳକକୁ ଧୂପ ଦେବ, ଝାଡ଼ିବ ଓଁ ନମୋ ରାବଣାୟ ଚୂର୍ଣ୍ଣୟ ଚୂର୍ଣ୍ଣୟ ହସ୍ତାୟ ମୁଞ୍ଚ ମୁଞ୍ଚ ସ୍ୱାହା । ଏହି ମନ୍ତ୍ରରେ ଝାଡ଼ିବ । ଏହିପରି ତିନିଦିନ କରି ଚତୁର୍ଥ ଦିନରେ ବ୍ରାହ୍ମଣ ଭୋଜନ ଦେବ ।

ବାଳକର ଜନ୍ମର ଏଗାର ଦିନରେ, ଏଗାର ମାସରେ, ଏଗାର ବର୍ଷରେ ବାଳକକୁ ଯେ ପିତୁଳା ରୋଗ ହୁଏ, ତାହାକୁ ଶିଳପିଛିକା ରୋଗ କହନ୍ତି । ପ୍ରଥମେ ଜ୍ୱର ହୁଏ, ସ୍ତନ ପିଏ ନାହିଁ, ମୋଡ଼ି ହୁଏ, ହାତଗୋଡ଼ ଛାଟେ, ଉପରକୁ ତରଛି ଚାହିଁ ମୂର୍ଚ୍ଛିତ ହୁଏ ।

ଚିକିତ୍ସା—ଜନ୍ତୁଣିରେ ପିତୁଳା ପ୍ରସ୍ତୁତ କରିବ, ରକ୍ତ ଚନ୍ଦନ ଘୋରି ସେହି ପିତୁଳା ମୁହଁରେ ଲଗାଇବ । ସନ୍ଧ୍ୟାବେଳେ ସେହି ପିତୁଳାକୁ ନେଇ ଗ୍ରାମର ଶେଷରେ ପୂର୍ବ ଆଡ଼େ ତିନି ଛକରେ ଗୋଟିଏ ସରାରେ ପିତୁଳାକୁ ରଖିବ, ସେହି ପିତୁଳା ଉପରେ ଦୁଧ ଅଳପ ଢାଳିବ, ସାତ ଗୋଟି ହଳଦିଆ ବାନା, ହଳଦିଆ ଫୁଲ, ରକ୍ତଚନ୍ଦନ, ପାନ ସାତ ଗୋଟି, ଧୂପ, ଚନ୍ଦନ, ଆଠ ଗୋଟି

ଚକୁଳି, ଆଠ ଗୋଟି ବଡ଼ା, ଆଠ ପ୍ରକାର ପିଠା, ମଦ, ମାଛ, ମାଂସ ଏସବୁ ନୈବେଦ୍ୟ କରିବ । ସେଠାରୁ ଅସି ପୂର୍ବୋକ୍ତ ଶାନ୍ତ୍ରୋଦକ ମନ୍ତ୍ରରେ ପାଣି ଛିଞ୍ଚିବ । ଗୋରୁ ସିଂଘ, ଶିବନିର୍ମାଲ୍ୟ, ଗୁଗ୍ଗୁଳ, ସୋରିଷ, ଘିଅ, ସାପକାତି ଏ ପଦାର୍ଥମାନଙ୍କରେ ବାଳକକୁ ଧୂପ ଦେବ ଓଁ ରାବଣାୟ ମୁଞ୍ଚ ମୁଞ୍ଚ ସ୍ୱାହା । ଏହି ମନ୍ତ୍ରରେ ଝାଡ଼ିବ ଏହାପରେ ତିନିଦିନ କରିବ, ଚତୁର୍ଥ ଦିନରେ ବ୍ରାହ୍ମଣଭୋଜନ କରାଇବ ।

ବାର ଦିନରେ, ବାର ମାସରେ, ବାର ବର୍ଷରେ ବାଳକମାନଙ୍କୁ ଯେଉଁ ପିଲ୍ଲା ରୋଗ ହୁଏ ତାହାକୁ କାମୁକା ଅପସ୍ମାର କୁହାଯାଏ, ପ୍ରଥମେ ଜ୍ୱର ହୁଏ, ସର୍ବଦା କାନ୍ଦେ, ଶରୀର ଶୀର୍ଣ୍ଣ ହୁଏ, ମୁହୁର୍ମୁହୁ ଲମ୍ବଚକ୍ଷୁଠାରୁ ଉର୍ଦ୍ଧ୍ୱଶ୍ୱାସ ହୁଏ, ମୁଣ୍ଡରୁ ବାଳ ଉପୁଡ଼ି ଥାଏ, ଉପରକୁ ଟସି ଚାହିଁ ମୂର୍ଚ୍ଛିତ ହୁଏ ।

ଚିକିତ୍ସା—ଦୁଧକୁ ଖୁଆ କରି ସେଥିରେ ପିତୁଳା ପ୍ରସ୍ତୁତ କରିବ, ସନ୍ଧ୍ୟାରେ ଗ୍ରାମର ତିନି ଛକ ପୂର୍ବ ଦିଗରେ ସନ୍ଧିରେ ସେହି ପିତଳା ରଖି ଶୁକ୍ଳ ଫୁଲ, ପାନ, ସାତ ଗୋଟି ଦୀପ, ସାତୋଟି ଚକୁଳି ପିଠା ନୈବେଦ୍ୟ କରିବ, ସେଠାରୁ ଅସି ପୂର୍ବୋକ୍ତ ଶାନ୍ତ୍ରୋଦକ ମନ୍ତ୍ରରେ ବାଳକକୁ ପାଣି ଛିଞ୍ଚିବ, ଗୁଗ୍ଗୁଳୁ, ଶିବନିର୍ମାଲ୍ୟ, ସୋରିଷ ଏସବୁରେ ବାଳକକୁ ଧୂପ ଦେବ, ଓଁ ନମଃ ରାବଣାୟ ମୁଞ୍ଚ ମୁଞ୍ଚ ହନ ହନ ସ୍ୱାହା । ଏହି ମନ୍ତ୍ରରେ ଝାଡ଼ି ଦେବ, ଏହାପରେ ତିନିଦିନ କରି ଚତୁର୍ଥଦିନ ବ୍ରାହ୍ମଣ ଭୋଜନ କରିବ ।

କଣ୍ଠାପାଣି ମନ୍ତ୍ର—ଓଁ କରତ ଅ ଇ ଲୁ କରତ ଚଉଦଭୁବନ ମାଡ଼ି ବସିଲୁ କରତ ଚନ୍ଦ୍ର ସୂର୍ଯ୍ୟଙ୍କୁ, ଅଢ଼ାଇ ଅଙ୍ଗୁଳି ଘୁଞ୍ଚି ଏକରତକ କାଟେ, ଛେଦ କାଟେ, ଭେଦ କାଟେ ଦୃଷ୍ଟି କାଟେ ଖୋଜିଲା କାଟେ ପୋତିଲା କାଟେ ନାଉମୋଡ଼ କାଟେ ନଷ୍ଟପଦ କାଟେ ପୋଡ଼ୁ କାଟେ ଗଛ ଉପଡ଼ା କାଟେ ଡାଳ ଭଙ୍ଗା କାଟେ, ଡାକିଲା କାଟେ, ହାକିଲା କାଟେ, ନଶୁଲା କାଟେ, ଘୁଙ୍କମଦରଙ୍ଗା କାଟେ, ଛିଡ଼ିଲା ବୁଡ଼ିଲା କାଟେ, ଯେସିଲା କାଟେ, ଭେଟିଲା କାଟେ, ବଙ୍କା କାଟେ କୋଣ କୋଣିଆ ଝଣ ଝଣିଆ ମସାଣିଆଁ କାଟେ ନକାଷ୍ଠ ଝୋଲ କାହାର ଅଣ୍ଟା ବଙ୍କା ଭୂଅଁଣି ଚଣ୍ଡିକାଳିକା ଦୂରଧ୍ୱଂସ ମହାମାଇ ଓ ମଶାଣି ଦେବୀ ଦୁର୍ଗା କଣ୍ଠା

ଘବ ଦନ୍ତମା ଭୈରବଙ୍କର କୋଠି କୋଠି ଆଜ୍ଞା ଏମନ୍ତ୍ରରେ ଅକାଟ ବନ୍ଧର ବା କୁଅଁର ପାଣିଆଣି ମନ୍ତ୍ରି ପାଣି ତିନି ମୁଠା ଛିଞ୍ଚିଲେ ଭୂତପ୍ରେତ ପିଶାଚ ଦୃଷ୍ଟି ନିବାରଣ ହୁଏ ।

ଚନ୍ଦନଂ ସାରବେଟଧେଣ୍ଟ ଚ ଶଙ୍ଖ ନାଭିସମାଯୁତେ
ପଶ୍ଚାରୁପେ ପ୍ରଲେପୋଽୟ ମବଲେ ହସ୍ତୁସଶ୍ୟତେ ।

ରକ୍ତ ଚନ୍ଦନ, ଅନନ୍ତ ମୂଳ, ଶାମାଲତା ଓ ଶଙ୍ଖ ପୁଷ୍ପ, ଏ ସମୁଦାୟ ଚୂର୍ଣ୍ଣ କରି ମହୁ ସହିତ ସେବନ କଲେ ଦୁନିବାର ଜ୍ୱର ବନ୍ଦ ହୁଏ ଓ ନାଭି ସ୍ଥାନରେ ଏହିସବୁ ବାଟି ଲେପ ଦେଲେ ନାଭି ଶୋଥ ଭଲ ହୁଏ ।

ବୃହଧୂମନା ସାକ୍ରୁଷ୍ଟ ବଜକେନ୍ଦ୍ର ଜବୈଶିଶ
ଲେପସ୍ତକ୍ଷେଣ ହନ୍ତ୍ୟାସୁ ସିଦ୍ଧାପାମାବଚର୍ଚ୍ଚିକା ।

ଅଳାନ୍ଧ, ହରିଦ୍ରା, କୁଡ଼ ଶ୍ୱେତ ସୋରିଷ, ଇନ୍ଦ୍ରଯବ ଏ ସମୁଦାୟ ଗାଈ ଦହି ସହିତ ବାଟି ପ୍ରଲେପ ଦେଲେ ଶୀଧ୍ମା ପାମା ଓ ବିଚର୍ଚ୍ଚିକା ରୋଗ ପ୍ରଶମିତ ହୁଏ ।

ସାରିବା ତଳଲୋଧ୍ରାଣା କସାୟ ମଧୁକଶର
ଫସ୍ରାବଣି ମୁଖେଶୋସ୍ତ ଧାରଣାର୍ଥ ଶୀସୋସଦା ।

(ଅନନ୍ତ ମୂଳ) ଚମଡ଼ା ଲଇ, ତଳ, ଲୋଧ, ଯଷ୍ଟିମଧୁ ଏହି ସମୁଦାୟ ପାଚନ କରି ବାଲକର ମୁଖ କୁଳିକଲେ ମୁଖସ୍ରାବ ନିବାରିତ ହୁଏ ।

ଯୋବାଲଃ ଚରଜାତଃସ୍ତନ୍ୟାନ ଗୃହ୍ଣାତିତଶା ସହସୌବ ॥
ଧାତ୍ରିମଧୁ ଘୃତପଥ୍ୟାକଲ୍କେ ନାଘର୍ସ୍ୟେହି ଜହ୍ୱାମ୍ ।

ଜନ୍ମ ହେବାର ବାଳକ କ୍ଷୀରପାନ ନକଲେ ଅଁଳା, ହରିଡ଼ା ଚୂର୍ଣ୍ଣଯହି ଘୃତ ଓ ମଧୁ ମିଶ୍ରିତ କରି ବାଳକର ଜହ୍ୱାରେ ଘସିଲେ ସ୍ତନପାନ କରେ ।

ସ୍ତନ୍ୟାଽଭାବେ ପୟସ୍ତଃଛାଗଂ ଗବ୍ୟଂବା ତଦ୍ଗୁଣଂ ପିବେତ୍
ହସ୍ୱେଣ ପଞ୍ଚମୂଳେନ ସ୍ଥିରସ୍ଥା ବା ଶୀତାଯୁତଂ

ସ୍ତନ କ୍ଷୀରର ଅଭାବ ହେଲେ ଶିଶୁକୁ ଛେଳି କ୍ଷୀର ଦେବ, ଅଥବା ସ୍ୱଳ୍ପ ପଞ୍ଚ ମୂଳରେ କମ୍ବା ସାଳପର୍ଣ୍ଣୀର ସହିତ ଗବ୍ୟ ଦୁଗ୍ଧ ସହିତ ଯଥା ନିୟମରେ

ସିଦ୍ଧ କରି କହ୍ଲାର ଚନ୍ଦନ ମିଶାଇ ବାଳକଙ୍କୁ ପାନ କରାଇଲେ ଦୂଷିତ ରକ୍ତ ବିନାଶ ହୁଏ ।

ବ୍ୟୋଷସ ଶୀବଗ୍ରାରସ କଳକଙ୍କ୍ବା ପିତମଥ ପୟସା
ଉଲ୍‌ବମ୍ ନସେସଂ କୁରୁତେ ପଞ୍ଚୂତା ମରାଳଣ୍ୟା ଗୃତ୍ୟନ୍ତମ୍ ।

ମରିଚ ଏକ ଭାଗ, ସୁଣ୍ଠି ୨ ଭାଗ, କୁଡ଼ୁ ମାସାର ୪ ଭାଗ ଏକତ୍ର ମିଶ୍ରିତ କରି ଅର୍ଦ୍ଧ ଅଣା ମାତ୍ରାରେ ଏହି ସକଳ ଦ୍ରବ୍ୟ ଗୁଡ଼ ଓ ଚାଉଳର ସହିତ ପାନ କରାଇଲେ ଶିଶୁମାନଙ୍କର ଗ୍ରହଣିରୋଗ ନିବାରିତ ହୁଏ ।

ଅମୃତ କାମୁସମ୍ଭୂନାଂ ଭ୍ରମମାଦାସ୍ୟ ଚୂର୍ଣ୍ଣୟେତ୍
ମଧୁନା ଲେହଏଦ୍ବାଳା ମତୀସାର ବିନାହନ ।

ଆମ୍ରଛାଲ, ଯାମ୍ବଛାଲ, ଯାମ ଛାଲ ଏକତ୍ର ଚୂର୍ଣ୍ଣ କରି ଅର୍ଦ୍ଧ ଅଣା ଠାରୁ ଏକ ଅଣା ପର୍ଯ୍ୟନ୍ତ ମହୁର ସହିତ ଚଟାଇଲେ ବାଳକର ଅତୀସାର ବିନଷ୍ଟ ହୁଏ ।

ଘୃତେନ ସିନ୍ଧୁବିଲୈ୍ଳା ହିଙ୍ଗୁଭାର୍ଗୀ ରସୋ ଲିହନ୍
ଆନାହଂ ବାତସୂଳଞ୍ଚ ସେଯ୍ୟୈତୋଯ୍ୟେ ନବାଶିଶୁ ।

ସୈନ୍ଧବ, ବେଲଶୁଣ୍ଠା ଅଳାଇଚ, ହିଙ୍ଗୁ, ବ୍ରହ୍ମଯଷ୍ଟି ସମଭାବେ ଚୂର୍ଣ୍ଣ କରି ଅର୍ଦ୍ଧ ଅଣା ମାତ୍ରା ଘୃତସହ ଅଥବା ଜଳ ସହିତ ପାନ କରାଇଲେ ବାଳକର ଅତୀସାର ବାତସୂଳ ନିବାରିତ ହୁଏ ।

ହରୀତକ ବଚ୍ଚୁକୁଷ୍ଠ କଳ୍କଂମାକ୍ଷିକ ସଞ୍ଜୁକ୍ତଂ
ପିତ୍ୟାକୁମାରଃ ସ୍ତନ୍ୟେନଃ ମୁଚ୍ୟତେ ତାଲୁ ପାତନାତ୍ ।

ହରିଡ଼ା, ବଚ, କୁଡ଼ ଜଳ ସହିତ ସିଦ୍ଧ କରି ମହୁ ସହିତ ସ୍ତନକ୍ଷୀରର ସହିତ ପାନ କରାଇଲେ ତାଲୁ ପାତନା ରୋଗ ବିନାଶ ହୁଏ ।

ସୁବର୍ଣ୍ଣ ଗୈରିକଶ୍ୟାପି ଚୂର୍ଣ୍ଣାନି ମଧୁନାସହ
ଲୌଢ଼୍ୟା ସୁଖମୋଚାପ୍ନୋତି କ୍ଷିପ୍ରଂ ହିକାର୍ଦ୍ଦିତ ଶୀଶୁହଃ

ଅତ୍ୟନ୍ତ ଲୋହିତ ବର୍ଣ୍ଣ ଗେରିମାଟିର ଚୂର୍ଣ୍ଣ, ଦୁଇ ରତି ମାତ୍ରାରେ ମଧୁ ସହିତ ଲେହନ କରାଇଲେ ଶିଶୁମାନଙ୍କର ହିକା ଶୀଘ୍ର ନଷ୍ଟହୁଏ ।

ଚନ୍ଦନଂ ଶୃଙ୍ଗବେରଂ ଚ ତଥାଦନ୍ତୀ ଗବାକ୍ଷିକି
ଚୂର୍ଣ୍ଣିକୃତ୍ୱାତୁ ସବେଂସା ସୁଖକ୍ଷେନାମ୍ବୁନା ପିବେତ୍
ଶ୍ୱାସକାସ ସୋଥହିକ୍କା କୁମାରଣା ପ୍ରଣାଶୟେତ୍ ।

ଚିତା ମୂଳ, ଶୁଣ୍ଠି, ଦନ୍ତୀ ମୂଳ; ଗୋରେକ୍ଷ ଗୁଡ଼ିଲ ଏ ସମ୍‌ଦାୟ ଚୂର୍ଣ୍ଣ ଅର୍ଦ୍ଧ ଅଣା ମାତ୍ରା ଅଳ୍ପ ଉଷୁମ ଜଳରେ ପାନ କରାଇଲେ ଶ୍ୱାସ କାସ ଓ ହିକ୍କା ବିନଷ୍ଟ ହୁଏ ।

ମୟୂର ପକ୍ଷଭସ୍ମ ବୃନ୍ଦ ସୀତଂ ଜଳଂ କ୍ଷେନଭ୍ୱେତଂ ॥
ପେୟଂ ତୃଷ୍ଣାଘ୍ନଂ ବଟକାଷ୍ଠଜ ଭସ୍ମ ଜଳଂ ॥
ବକ୍ତ୍ରେ ଯୋଜଜ ଧୃତଂ ବକ୍ତ୍ରେ । ।

ମୟୂର ପକ୍ଷୀ ଭସ୍ମ ଜଳରେ ଏକ ଘଣ୍ଟା ବତୁରାଇ ସେହି ଜଳ ପାନ କରାଇଲେ ଶିଶୁ ତୃଷ୍ଣା ନିବାରିତ ହୁଏ । ସେହି ରୂପେ ବଟ କାଠର ଭସ୍ମ ପୂର୍ବ ପ୍ରକାରେ ବତୁରାଇଲେ ମୁଖ ତୃଷା ନିବାରିତ ହୁଏ ।

ସୋମ ଗ୍ରହଣେ ବଧ୍ୱବଦ୍ଧ କେକଶୀଖା ମୂଳନ୍ତୁ ଧୃତଂ ବଦ୍ଧଂ ॥
ସନ୍ତଂଧନେ‌ଥ କନ୍ଧରାୟାଂ ଶପଯୁତ୍ୟହନ୍ତ୍ରିକାଂ ନିୟତମ୍ ।

ଚନ୍ଦ୍ର ଗ୍ରହଣ ସମୟରେ ମୁଣ୍ଡର କେଶ ମୁକ୍ତଳିତ କରି ଅପାମାର୍ଗର ମୂଳ ଉପାଡ଼ି ବାଳକର ଅଣ୍ଟାରେ ଓ ଗଳାରେ ବାନ୍ଧିଲେ ଏହା ଦ୍ୱାରା ଅଇନ୍ତ୍ରିଆ ରୋଗ ଉପସମ ହୁଏ ।

ତୈଳାଖ୍ୟା ଭାଗମେକଂ ସୁରଭ୍ୟଂଦୌ ଚ ନିମ୍ବଦଳର ସଖ୍ୟା ॥
ଗବ୍ୟାଂପୟ ଚତୁର୍ଣ୍ଣମେବଂ ଦତ୍ୱାପରେ ତୈଳାଂ ତୈଳାଭ୍ୟଙ୍ଗ ସତତଂ
ରୋଗମ ନାମକା ଷମୁପଦ୍ରବନ୍ତି ।

ତୈଳ ୧ ଭାଗ, ଗୋମୂତ୍ର ୨ ଭାଗ, ନିମ୍ବପତ୍ର ରସ ୩ ଭାଗ, ଗବ୍ୟଦୁଗ୍ଧ ୪ ଭାଗ ଏକତ୍ର କରି ଏହି ତେଲ ମର୍ଦ୍ଦନ କରିଲେ ଶିଶୁର ତାଳୁକଣ୍ଟକ ରୋଗ ନିବାରିତ ହୁଏ ।

ଧାତୁକ ବଲ୍ୱଧନ୍ୟାକ ଲୋଧେନ୍ଦ୍ର ଯବଧାନ୍ୟକୈ ॥
ଲେହବୈ ଉଦ୍ରେଣ ବାଳାନାଂ ଜ୍ୱରାତିସାର ବାନ୍ତ ଯିତ୍ର ।

ଧାତୁକ ଫୁଲ, ବେଲମୂଣ୍ଡା, ଧନିଆ, ଲୋଧ, ଇନ୍ଦ୍ରଯବ ଏସବୁ ସମଭାବେ ଚୂର୍ଣ୍ଣ କର ମହୁ ସହିତ ଦୁଇରତି ପ୍ରମାଣେ ସେବନ କଲେ ଜ୍ୱରାତିସାର, ବମନ ନିବାରିତ ହୁଏ ।

ଘନକୃଷ୍ଣା ରୁଣାସୃଙ୍ଗି ଚୂର୍ଣ୍ଣକ୍ଷୌଦ୍ରେଣ ସଞ୍ଜୁତଂ
ଶିଶୁ ଜ୍ୱରାତିସାରଘ୍ନଂ ଶ୍ୱାସକାସ ବମି ହରଂ ।

ମୁଥା, ପିପ୍ପଳୀ, ଅତୁଚି, କକଡ଼ାସିଙ୍ଗି ଏସବୁ ସମଭାଗେ ଚୂର୍ଣ୍ଣ କର ଦୁଇ ଚନା ଲେଖାରେ ମହୁ ସହିତ ଖୁଆଇଲେ କାସ, ଶ୍ୱାସ, ଜ୍ୱରାତିସାର ବାନ୍ତ ନିବାରିତ ହୁଏ ।

ଅଂକୋଠମୂଳ ମଥବା ତଣ୍ଡୁଳ ସଲ୍ଲିଳେନ ବତ୍ସଦମୂଳମ୍ବା ॥
ପିତଂ ହତ୍ୟନ୍ତସାରଂ ଗ୍ରହଣିରୋଗଶ୍ଚ ଦବାରମ୍ ।

**ଅଙ୍କୁ**ଲ ମୂଳ, ବତ୍ସ ଓଲ ବାଟି ଗୁଉଳ ଧୁଆ ଜଳ ସହିତ ସେବନ କରାଇଲେ ବାଳକର ଦୁର୍ନିବାର ଅତିସାର ନିବାରିତ ହୁଏ ।

ଶୀତଯୀରକସର୍ଜ୍ଜ୍ୟ ଚୂର୍ଣ୍ଣଂ ବଲ୍ୱାଦଳାମ୍ବୁ ମିଶ୍ରିତଂ ପିତମ୍ ॥
ହନ୍ତାମରକ୍ତ ମୂଳଂ ଗୁଡ଼ସହିତଃ ଶ୍ୱେତସୋଯୋ ବା ମରିଚ
ମୋହସଥ କୁଟଜଂ ଦ୍ୱିଗୁଣିକୃତ ମୂତଶ୍ୱେତର କ୍ରମଶଃ ॥
ଗୁଡ଼ତକ୍ରଯୁତ ମେତଦ୍ ଗ୍ରହଣି ରୋଗ ନିହଂନ୍ତ୍ୟାଂଯୁ ।

ଏକ ରତି ଶ୍ୱେତ ଜିରା, ଏକ ରତି ଝୁଣା

ବେଲ ପତ୍ର ରସର ସହିତ ଅଥବା ଝୁଣା ଚୂର୍ଣ୍ଣ ଗୁଡ଼ ସହିତ ସେବନ କରାଇଲେ ବାଳକମାନଙ୍କର ଆମରକ୍ତ ଜନିତ ନିବାରିତ ହୁଏ ।

